# ପୁରାଣଯୁଗର କାହାଣୀ

ଲେଖିକା :
**କ୍ଷେତ୍ରମଣି ପତି**

ପ୍ରକାଶକ :
**ସୁଚରିତା ପବ୍ଲିକେଶନସ୍**
୪୩୧, ଶହୀଦ ନଗର, ଭୁବନେଶ୍ୱର-୭୫୧୦୦୭

ପ୍ରଥମ ପ୍ରକାଶ : ୧୯୯୫

ପ୍ରଚ୍ଛଦ, ଅଳଙ୍କରଣ :
**ଦେବରାଜ ସାହୁ**

ମୂଲ୍ୟ : **ପନ୍ଦରଟଙ୍କା ମାତ୍ର**

# ଅଭିମତ

ଶ୍ରୀମତୀ କ୍ଷେତ୍ରମଣି ପତିଙ୍କ ଦ୍ୱାରା ଲିଖିତ କେତୋଟି ପୌରାଣିକ ଗଳ୍ପର ଏକ ପାଣ୍ଡୁଲିପି ପଢିବାର ସୁଯୋଗ ପାଇଲି। ଏଥିରେ ସର୍ବମୋଟ ପନ୍ଦରଟି ଗଳ୍ପ ସ୍ଥାନ ପାଇଛି। ତନ୍ମଧ୍ୟରୁ ଅଳ୍ପ କେତୋଟିକୁ ଛାଡିଦେଲେ ଅନ୍ୟଗୁଡିକ ହିନ୍ଦୁ ଦେବଦେବୀ ସମ୍ବନ୍ଧୀୟ। ସବୁଗୁଡିକ ଆମର ଜାଣିବା କଥା। ଲେଖିକା ବହୁ ଶ୍ରମ କରି ସରଳ ଭାଷାରେ ଗଳ୍ପଗୁଡିକ ଲେଖିଛନ୍ତି, ଯେପରି ଛୋଟ ପିଲାମାନେ ବୁଝିପାରିବେ ଏବଂ ପଢି ଆନନ୍ଦ ପାଇବେ। ପୁସ୍ତକଟି ଶୁଦ୍ଧ ଭାବରେ ଛପା ହେଲେ ପିଲାମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା।

ଏ ୧୦।୮।୯୨

# ସୂଚୀ


| | | |
|---|---|---|
| ୧. | ରଥଯାତ୍ରା କାହିଁକି ହେଲା ? | ୫ |
| ୨. | ମହିଷମର୍ଦ୍ଦିନୀ | ୯ |
| ୩. | ଦୁର୍ଗେ, ଦୁର୍ଗତିନାଶିନି ! | ୧୩ |
| ୪. | ମହାଭାରତର ମହାନ୍ କଥା ... | ୧୮ |
| ୫. | ଷଷ୍ଠୀପୂଜା ଓ ବିରାଡି | ୨୪ |
| ୬. | ପଞ୍ଚେନ୍ଦ୍ରିୟ | ୨୭ |
| ୭. | ସତ୍ୟ ଓ କଳି | ୩୨ |
| ୮. | ଗୁରୁ ଦକ୍ଷିଣା | ୩୬ |
| ୯. | ଗୁରୁଭକ୍ତ ଆରୁଣି | ୪୦ |
| ୧୦. | ଶିବିରାଜା | ୪୩ |
| ୧୧. | ଭକ୍ତବାଳକ ନଚିକେତା | ୪୬ |
| ୧୨. | ଶିବରାତ୍ରି ଓ ଶବର | ୫୦ |
| ୧୩. | ଭକ୍ତର ଭଗବାନ | ୫୪ |
| ୧୪. | ଶାପମୋଚନ | ୫୮ |
| ୧୫. | ଶ୍ରେଷ୍ଠ ଦେବତା କିଏ ? | ୬୨ |

# ରଥଯାତ୍ରା କାହିଁକି ହେଲା ?

ପୁରାଣଯୁଗର କଥା । ଗଜପତି ମହାରାଜ ଇନ୍ଦ୍ରଦ୍ୟୁମ୍ନ ଓ ମହାରାଣୀ ଗୁଣ୍ଡିଚା ମନ୍ଦିରଟିଏ ତୋଳି ଠାକୁର ପ୍ରତିଷ୍ଠା କରିବା ପାଇଁ ବ୍ୟଗ୍ର ହେଉଥାଆନ୍ତି । ଦେଉଳ ଯେପରି, ଠାକୁର ସେପରି ହେବା ଆବଶ୍ୟକ । ଠାକୁର ଖୋଜା ପଡିଥାଏ ।

ନୀଳମାଧବ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ଦୁଃଖ ସହି ପାରିଲେ ନାହିଁ । ତାଙ୍କୁ ସ୍ୱପ୍ନରେ କହିଲେ, ''ହେ ରାଜା ! ଦ୍ୱାପରଯୁଗରେ ମୋର ଶବକୁ ପାଣ୍ଡବମାନେ ଚନ୍ଦନକାଷ୍ଠରେ ଅଗ୍ନି ଲଗାଇ ତହିଁରେ ନିକ୍ଷେପ କଲେ । ଅଗ୍ନି ମୋ ଶବକୁ ଛୁଇଁଲା ନାହିଁ । ପାଣ୍ଡବମାନଙ୍କୁ ଆକାଶବାଣୀ ଶୁଣାଇ ମୁଁ କହିଲି, ମୋର ଦରପୋଡା ଶରୀରକୁ ସମୁଦ୍ରରେ ଭସାଇ ଦିଅ । ସେ କାଠଗଣ୍ଡି ଭାସି ବୁଲୁଛି, ତୋର ଭକ୍ତି ଯୋଗୁଁ ସେହି କାଠଗଣ୍ଡି ଆସି ବାଙ୍କିମୁହାଣରେ ଲାଗିବ । ତୁ ତାକୁ ପ୍ରତିମା ଗଢାଇ ଦେଉଳରେ ପ୍ରତିଷ୍ଠା କର । ଶବରରାଜା ବିଶ୍ୱାବସୁ ମୋତେ ନୀଳମାଧବ ରୂପେ ପୂଜା କରୁଛି । ମୁଁ ସେଠାରେ ଅଛି ।''

ରାଜା ସ୍ୱପ୍ନ ଦେଖି ଉଠିପଡିଲେ । ସକାଳ ନ ପାହୁଣୁ ପାତ୍ରମନ୍ତ୍ରୀ ନେଇ ବାଙ୍କିମୁହାଣକୁ ଗଲେ । ଦେଖିଲେ କାଠଗଣ୍ଡି ଭାସୁଛି । ରାଜା ଭକ୍ତିଭରେ ପ୍ରଣାମ କଲେ । କାଠଗଣ୍ଡିରେ ପାଟବସ୍ତ୍ର ଘୋଡାଇ ଅଣାଇଲେ । ଏଥର ମୂର୍ତ୍ତି ଗଢିବାକୁ ରାଜା ତତ୍ପର ହୋଇ ରାଜ୍ୟସାରା ବଢେଇଙ୍କୁ ଡକାଇଲେ । ପ୍ରତିଦିନ ବଢେଇ କାରିଗରମାନେ ଆସିଲେ । କାଠଗଣ୍ଡିରେ ନିହାଣ ମାରିବା ମାତ୍ରେ ନିହାଣ ଭାଙ୍ଗିଗଲା । ସେମାନେ ଲାଜରେ ମୁଣ୍ଡ ନୁଆଁଇ ଫେରିଲେ ।

ରାଜାଙ୍କର ମହା ଭାବେଣି ପଡିଲା । ରାଜ୍ୟ ସାରା ବଢେଇ ତ ଆସି ଫେରିଲେ, କିଏ ମୂର୍ତ୍ତି ଗଢିବ ? ଏତିକିବେଳେ ଜଣେ ବୁଢା ବଢେଇ ଆସିଲା । ଡାହାଣ ହାତରେ ଏକ ମୁଗୁର, ବାମ ହାତରେ ନିହାଣ । ତା'ର ହାତ, ଗୋଡ ଥରୁଛି । ଚାଲିବାକୁ ଦେହରେ ବଳ ନାହିଁ । ଆଖିକୁ ଭଲ ଦିଶୁନାହିଁ । ରାଜାଙ୍କୁ ଦେଖାକରି କହିଲା, ''ଛାମୁ ! ମୁଁ ଠାକୁର ମୂର୍ତ୍ତି ଗଢିଦେବି, ଯଦି ମୋର ଏକ ସର୍ତ୍ତ ରକ୍ଷା କରିବେ !''

ରାଜା ବୁଢାର ଅବସ୍ଥା ଦେଖି ତା'ର କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । କିଛି ସମୟ ରହି କହିଲେ, ''ଯଦି ତୁମେ ପାରିବ କୁହ, କ'ଣ ତୁମର ଦରକାର ଓ ତୁମର ନାମ କ'ଣ ?''

ବୁଢା କହିଲା, ''ଛାମୁ ! ମୋର ନାମ ଅନନ୍ତ ମହାରଣା । ମୁଁ ବେଶୀ କିଛି କହୁନାହିଁ । ଦେଉଳ ଭିତରେ ମୁଁ ମୂର୍ତ୍ତି ଗଢିବି, ଏକୋଇଶ ଦିନ କବାଟ ବନ୍ଦ ରହିବ । କବାଟକୁ କେହି ଛୁଇଁବେ ନାହିଁ ।'' ରାଜା ବୁଢାର ଅବସ୍ଥା ଦେଖି ନଦେଖିବା ଭଳି ହୁକୁମ ଦେଲେ । ବୁଢା ବଢେଇ ଦେଉଳ ଭିତରେ ରହିଲା ।

ରାଜା ସିନା ବୁଢାକୁ ଆଦେଶ ଦେଲେ, କିନ୍ତୁ ତାଙ୍କ ମନରେ ଭୀଷଣ ଭୟ । ବୁଢା ଉପବାସରେ ଦେଉଳ ଭିତରେ ରହିଛି । ଯଦି ଭୋକ ଉପାସରେ ତା'ର ପ୍ରାଣ



ଛାଡିଯିବ, ମହାଦୁର୍ଘଟଣା ଘଟିବ। ଆମର ମହାପାପ ହେବ- ଏହିପରି ଭାବି ମୁଦା ଦେଉଳ ପାଖରେ ରାଜାରାଣୀ କାନ ଡେରି ଶୁଣନ୍ତି। ବାରଦିନ ପର୍ଯ୍ୟନ୍ତ ଠୁକୁ ଠୁକୁ ଶବ୍ଦ ଶୁଭୁଥାଏ, ତେର ଦିନ ଆଉ ଶୁଭିଲା ନାହିଁ! ଚଉଦ ଦିନ ରାଣୀ ଆଉ ସମ୍ଭାଳି ପାରିଲେ ନାହିଁ। ରାଜା ବାରଣ କରିବା ସତ୍ତ୍ୱେ ସେ କବାଟ ଖୋଲିଦେଲେ। ଦେଖିଲେ ତିନିମୂର୍ତ୍ତି ଦରଗଢା ଠାକୁର। ବୁଢା ବଢେଇ ନାହିଁ। ରାଜା ମୁଣ୍ଡରେ ହାତ ଦେଇ ବସିପଡି କହିଲେ, ''ପ୍ରଭୋ ! ତୁମକୁ ଚିହ୍ନି ପାରିଲି ନାହିଁ। ତୁମ ବାକ୍ୟ ରକ୍ଷା କରିନାହିଁ, ମୋର ଅପରାଧ କ୍ଷମା କର !''

ଏତିକି ବେଳେ ଦେଉଳ ଭିତରେ ଶୂନ୍ୟବାଣୀ ଶୁଭିଲା, ''ରାଜା ! ତୁ ପ୍ରକୃତ ଭକ୍ତ। ମୁଁ ନିଜେ କାରିଗର ସାଜି ମୂର୍ତ୍ତି ଗଢୁଥିଲି। ତୁ ନିୟମ ଭାଙ୍ଗି ଚଉଦ ଦିନରେ ଦୁଆର ଖୋଲିଲୁ, ମୂର୍ତ୍ତି ଦରଗଢା ରହିଲେ !''

ରାଜା ଇନ୍ଦ୍ରଦ୍ୟୁମ୍ନ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତିଙ୍କୁ ମହା ସମାରୋହରେ ପ୍ରତିଷ୍ଠା କରାଇଲେ। ମନ୍ଦିରଠାରୁ ଅଳ୍ପ ଦୂରରେ ଗୋଟିଏ ପୁଷ୍କରଣୀ ଖୋଳାଇଲେ। ତାଙ୍କ ନାମାନୁସାରେ ସେହି ସରୋବର 'ଇନ୍ଦ୍ରଦ୍ୟୁମ୍ନ' ନାମରେ ନାମିତ ହେଲା। ଗୁଣ୍ଡିଚା ରାଣୀଙ୍କ ଅନୁରୋଧରେ ଏଇ ସରୋବର କୂଳରେ ଗୋଟିଏ ରାଜସୂୟ ଯଜ୍ଞର ଆୟୋଜନ କରାହୋଇଥିଲା। ଏହି ଯଜ୍ଞ ବେଦୀକୁ କେହି କେହି ମହାବେଦୀ କହନ୍ତି। ରାଣୀଙ୍କ ନାମାନୁସାରେ ଉକ୍ତ ଯଜ୍ଞମଣ୍ଡପ ''ଗୁଣ୍ଡିଚାମଣ୍ଡପ'' ନାମରେ ମଧ୍ୟ ପରିଚିତ। ଯଜ୍ଞାନୁଷ୍ଠାନଟି ସାତଦିନ ବ୍ୟାପି ହୋଇଥିଲା। ଏଇ ରାଜସୂୟ ଯଜ୍ଞରେ ଯଜ୍ଞନାରାୟଣ ରୂପେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ପୂଜିତ ହେଲେ।

ଆଷାଢ ଶୁକ୍ଳ ଦ୍ୱିତୀୟା ତିଥିରେ ମନ୍ଦିରରୁ ବାହାର ହୋଇ ଯଜ୍ଞମଣ୍ଡପରେ ସାତଦିନ ରହି ପୁଣି ଶୁକ୍ଳ ଦଶମୀ ତିଥିରେ ଠାକୁରମାନେ ସେଠାରୁ ତିନିରଥରେ ବସି ବାହୁଡି ଆସନ୍ତି।

ଶ୍ରୀଜଗନ୍ନାଥ ପୀଠ ଅତି ପ୍ରାଚୀନ। ଇତିହାସ ସାକ୍ଷୀରେ- ୧୧୧୮ ରୁ ୧୧୪୭ରେ ଶ୍ରୀଜଗନ୍ନାଥଙ୍କ ଶ୍ରୀମନ୍ଦିରର (ବଡଦେଉଳ) ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା। ଶ୍ରୀମନ୍ଦିର

ନିର୍ମାଣରେ ଓଡ଼ିଶା ରାଜ୍ୟର ଅଠର ବର୍ଷର ରାଜସ୍ୱ ଖର୍ଚ୍ଚ ହୋଇଥିଲା । ଅଠରଶହ ମହାଶିଳ୍ପୀଙ୍କର ଅଠରବର୍ଷର ପରିଶ୍ରମରେ ମନ୍ଦିର ଗଢି ଉଠିଥିଲା ବୋଲି କଥିତ ଅଛି ।

ଏଇ ଦେଉଳ ପ୍ରତିଷ୍ଠା ହେବା ପରେ ଗୁଣ୍ଡିଚା ମନ୍ଦିରରୁ ତିନି ଠାକୁର ଶ୍ରୀମନ୍ଦିରକୁ ଆସିଥିଲେ । ପ୍ରତିବର୍ଷ ସେଇ ଆଷାଢ ଶୁକ୍ଳଦ୍ୱିତୀୟା ତିଥିରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଦେବୀ ଶ୍ରୀମନ୍ଦିରଠାରୁ ତିନି ରଥରେ ବସି ଗୁଣ୍ଡିଚା ମନ୍ଦିରକୁ ଯାଇ ସେଠାରେ ସାତଦିନ ବସନ୍ତି । ଏହି ରଥଯାତ୍ରାକୁ ଶ୍ରୀଗୁଣ୍ଡିଚା କୁହାଯାଏ । ଏହା ହେଉଛି ରାଜସୂୟଯଜ୍ଞର ସ୍ମୃତି । ପୁଣି ଦଶମୀଦିନ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ତିନି ରଥରେ ବସି ଶ୍ରୀମନ୍ଦିରକୁ ବାହୁଡି ଆସନ୍ତି । ଏହାକୁ ବାହୁଡା-ଯାତ୍ରା କୁହାଯାଏ ।

ସେ ବଡଠାକୁର ଜଗତରନାଥ ଜଗନ୍ନାଥ । ତାଙ୍କର ବଡ କଳା ଶ୍ରୀମୁଖରେ ବଡଚକାଡୋଳା, ତାଙ୍କର ବଡଦେଉଳ, ବଡନୀଳଚକ୍ର ଉପରେ ଷାଠିଏହାତର ବଡବାନା, ବଡମହିମା, ବଡମଣୋହି, ବଡଦାଣ୍ଡ ଇତ୍ୟାଦି । ସେଇ ବଡ ଠାକୁରଙ୍କ ଗାଥା, କଥା ଅଳ୍ପ କେତେପଦରେ ବୁଝାଇ ହେବ ନାହିଁ ।

ଆମ ସଂସ୍କୃତିର ଦେବତା ଶ୍ରୀଜଗନ୍ନାଥ । ଆମେ ସେ ଜଗନ୍ନାଥ ଦେଶର ଲୋକ । ବିଶ୍ୱପ୍ରସିଦ୍ଧ ଆମ ପୁରୀ ଶ୍ରୀକ୍ଷେତ୍ର । ଜଗନ୍ନାଥ ଭାରତର ପ୍ରତ୍ୟେକ ହିନ୍ଦୁଙ୍କର ଆରାଧ୍ୟ ଦେବତା, ଯାହାଙ୍କର ନାମ ଶୁଣିଲେ ମଥା ସ୍ୱତଃ ନଇଁଯାଏ । ପୁରୁଷୋତ୍ତମ କ୍ଷେତ୍ର ଆର୍ଯ୍ୟ ସଂସ୍କୃତିର ସମନ୍ୱୟ ପୀଠ । ପ୍ରବାଦ ଅଛି, ରଥ ଉପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପାପ- ତାପ ନାଶ ଯାଇ ମହାପୁଣ୍ୟ ହୁଏ ।

"ରଥେ ତୁ ବାମନଂ ଦୃଷ୍ଟ୍ୱା
ପୁନର୍ଜନ୍ମ ନ ବିଦ୍ୟତେ ।"



# ମହିଷମର୍ଦ୍ଦିନୀ

ଶରତକାଳରେ ଦଶହରାପର୍ବ ପାଳନ କରାଯାଏ । ଏହାକୁ ଦୁର୍ଗାପୂଜା କୁହାଯାଏ । ମା'ଦୁର୍ଗା ମହାପରାକ୍ରମୀ ମହିଷାସୁରକୁ ମାରିଥିଲେ । ଏହି କଥାକୁ ମନେ ରଖିବା ପାଇଁ ଦୁର୍ଗାପୂଜା ପାଳନ କରାଯାଏ ।

ମହାଚିତ୍ତ ନାମରେ ଜଣେ ରାକ୍ଷସ-ରାଜା ଥିଲା । ତା'ର କନ୍ୟାର ନାମ ମାହିଷ୍ମତୀ । ସେହି ଅସୁର-ରାଜାର ରାଜ୍ୟରେ ଏକ ରାଜଉଦ୍ୟାନରେ ବହୁତ ଋଷି ତପସ୍ୟା କରୁଥିଲେ । ସେ ସ୍ଥାନଟି ଏକ ତପୋବନରେ ପରିଣତ ହୋଇଥିଲା ।

ଦିନେ ଅସୁର ରାଜନନ୍ଦିନୀ ମାହିଷ୍ମତୀ ଉପବନରେ ଭ୍ରମଣରେ ଯାଇ ସେହି ଋଷିମାନଙ୍କ ଆଶ୍ରମରେ ପହଞ୍ଚିଥିଲା । ସେଠାରେ ଦେଖିଲା କେଉଁ ଋଷି ଯଜ୍ଞ କରୁଛନ୍ତି ତ କିଏ ଆଖିବୁଜି ହାତଯୋଡି ବସିଛନ୍ତି, ପୁଣି ଅନ୍ୟ କିଏ ଉଚ୍ଚ ସ୍ୱରରେ ବେଦମନ୍ତ୍ର ପାଠ କରୁଛନ୍ତି ।

ତାଙ୍କ ଉପବନରେ ଋଷିମାନଙ୍କ କାର୍ଯ୍ୟ ଦେଖି ରାକ୍ଷସ ରାଜକନ୍ୟା ମନରେ ବହୁତ ରାଗ ହେଲା । ସେ ହିଂସାଜର୍ଜ୍ଜରିତ ହୋଇ ଏକ ମହିଷୀ ରୂପ ଧାରଣ କରି ତପୋବନ ମଧ୍ୟରେ ନାନା ଅତ୍ୟାଚାର କରି ନଷ୍ଟଭ୍ରଷ୍ଟ କଲା । ମହାତପା ଋଷି ସିଦ୍ଧଦୀପ ତପସ୍ୟାରତ ଥିଲେ, ତାଙ୍କର ଧ୍ୟାନ ଭଗ୍ନ ହେଲା । ସେ ଜାଗିଉଠି ରାଗରେ ଅଗ୍ନିଶର୍ମା ହୋଇ ମାହିଷ୍ମତୀକୁ ଅଭିଶାପ ଦେଲେ, "ହେ ମାୟାରୂପୀ ରାକ୍ଷସୀ ! ତୁ ଆଜିଠାରୁ ଏହି ମହିଷୀ ରୂପ

ଧରି ଶକ୍ତିହୀନା ହୋଇଯା।'' ମାହିଷ୍ମତୀ ବ୍ରହ୍ମଶାପ ପାଇବାରୁ ତା' ମନରେ ବହୁତ ଭୟ ହେଲା, ସେ ଋଷିଙ୍କ ପଦତଳେ ପଡି ଶାପମୁକ୍ତ ହେବାକୁ ବହୁତ କାକୁତିମିନତି କଲା। ଦୟାଳୁ ଋଷି ଶାନ୍ତ ହୋଇ ତାକୁ କହିଲେ, ''ତୋର ଯଦି ପୁତ୍ରସନ୍ତାନ ଲାଭ



ହେବ ତୁ ଶାପମୁକ୍ତ ହେବୁ। ତୋର ସେ ପୁତ୍ର ହେବ ଏକ ହିଂସାର ଅବତାର। ନାରୀ ହସ୍ତରେ ତା'ର ମୃତ୍ୟୁ ହେବ।''

ମହିଷାସୁର ହେଉଛି ଋଷି ସିନ୍ଧୁଦୀପ ଏବଂ ଅସୁର ରାଜକନ୍ୟା ମାହିଷ୍ମତୀଙ୍କ ପୁତ୍ର। ସେ ସାନବେଳୁ ମା'କୁ ପଚାରି ତିନିପୁରର ଖବର ସବୁ ବୁଝେ। ମହିଷାସୁର ବଡହେବା ପରେ ତା'ର ତିନିପୁର ବିଜୟ କରିବାକୁ ପ୍ରବଳ ଇଚ୍ଛା ହେଲା।

ଏହାର କିଛିଦିନ ପରେ ମହିଷାସୁର ଅମରବର ପାଇବା ପାଇଁ ବ୍ରହ୍ମାଙ୍କ ଉଦ୍ଦେଶ୍ୟରେ ତପସ୍ୟା କଲା। ତପସ୍ୟାରେ ସନ୍ତୁଷ୍ଟହୋଇ ବ୍ରହ୍ମା ତାକୁ ଦେଖାଦେଲେ। ମହିଷାସୁର ଅମର ହେବାପାଇଁ ତାଙ୍କୁ ବର ଦେବା ପାଇଁ ପ୍ରାର୍ଥନା କଲା। ବ୍ରହ୍ମା କହିଲେ, ''ଏହି ବର ମୁଁ ଦେଇ ପାରିବି ନାହିଁ। ତେବେ ତୁମେ ତ୍ରିଭୂବନ ବିଜୟୀ ହେବ। କିନ୍ତୁ ଜଣେ ନାରୀ ହାତରେ ତୁମକୁ ମରିବାକୁ ପଡିବ।''

ବରପ୍ରାପ୍ତି ପରେ ମହିଷାସୁରର ଖୁବ୍ ସାହସ ବଢିଗଲା। ବହୁତ ସୈନ୍ୟସାମନ୍ତ ନେଇ ମର୍ତ୍ତ୍ୟପୁର ଓ ପାତାଳପୁରରେ ଯୁଦ୍ଧକରି ସମସ୍ତଙ୍କୁ ପରାସ୍ତ କରି ବିଜୟୀ ହେଲା।

ତା'ପରେ ସ୍ୱର୍ଗ ଅଭିମୁଖେ ଯାତ୍ରାକରି ଦେବତାମାନଙ୍କ ସହ ଯୁଦ୍ଧକରି ସ୍ୱର୍ଗଜୟ କଲା। ମହିଷାସୁରର ଅତ୍ୟାଚାରରେ ତିନିପୁର କମ୍ପିବାକୁ ଲାଗିଲା।

ଦେବଗଣ ଭୟରେ ସ୍ୱର୍ଗ ଛାଡି ପଳାଇଲେ ଏବଂ ବ୍ରହ୍ମାଙ୍କୁ ପ୍ରାର୍ଥନା କଲେ। ଦେବତାଙ୍କ ଦୁର୍ଦ୍ଦଶା ଶୁଣି ବ୍ରହ୍ମା, ବିଷ୍ଣୁ ଓ ଶିବ ଖୁବ୍ ରାଗିଗଲେ। ସମସ୍ତେ ଏକାଠି ହୋଇ ମହିଷାସୁରକୁ ମାରିବା ପାଇଁ ଉପାୟ ସ୍ଥିର କଲେ। ବ୍ରହ୍ମାଙ୍କର ବ୍ରହ୍ମଶକ୍ତି, ଶିବଙ୍କର ମହାରୁଦ୍ରଶକ୍ତି ଏବଂ ବିଷ୍ଣୁଙ୍କ ଶକ୍ତିରେ ସ୍ୱର୍ଗର ସମସ୍ତଦେବତା ତାଙ୍କ ଶକ୍ତି ମିଶାଇଲେ। ଏହି ସର୍ବଶକ୍ତି ଏକ ଅପୂର୍ବନାରୀରୂପ ଧାରଣ କଲେ। ଜ୍ୟୋତିର୍ମୟୀ ମହାଦେବୀଙ୍କ ଦଶଭୁଜରେ ପ୍ରତ୍ୟେକ ଦେବଗଣ ନିଜ ନିଜର ଅସ୍ତ୍ରଶସ୍ତ୍ର ଦେଇ ସୁସଜ୍ଜିତ କରାଇଲେ। ଦେବୀ ମହାମାୟା ଶ୍ରୀଅଙ୍ଗରେ ଅଷ୍ଟରତ୍ନ ଖଚିତ ଅଳଙ୍କାର, ମସ୍ତକରେ ମୁକୁଟ ଏବଂ ପାଟବସ୍ତ୍ର ପରିଧାନରେ ମଣ୍ଡିତ ହେଲେ। ଦେବୀଙ୍କ ସୌନ୍ଦର୍ଯ୍ୟ କଳାମେଘରେ ବିଜୁଳି ପରି ଝଟକିଲା। ଏଥର ଦେବୀ ସିଂହ ବାହନରେ ବିଜେ ହେଲେ ଓ ନିଜ ଶରୀରରୁ ନବକୋଟି ଯୋଗିନୀ ସୃଷ୍ଟିକରି ତାଙ୍କୁ ଅଦୃଶ୍ୟ କରାଇଲେ। ଦେବୀ ବିନ୍ଧ୍ୟଗିରି ଯାଇ ସୁଭଦ୍ରା ନଦୀକୂଳରେ ବିଚରଣ କଲେ। ଦେବୀଙ୍କ ନିର୍ଦ୍ଦେଶରେ ଯୋଗିନୀମାନେ ଖୁବ୍ ଚିତ୍କାର କରିବାରୁ ମହିଷାସୁରର ରାଜ୍ୟ କମ୍ପି ଉଠିଲା। ମହାପ୍ରତାପୀ ମହିଷାସୁର ବିଚଳିତ ହେଲା। ଘଟଣା କ'ଣ ଜାଣିବା ପାଇଁ ତା'ର ସେନାପତି ଚଣ୍ଡ ଓ ମୁଣ୍ଡଙ୍କୁ ପଠାଇଲା।



ଦୁଇ ସେନାପତି ବିନ୍ଧ୍ୟଗିରିରେ ଦେବୀଙ୍କୁ ଦେଖିବାକୁ ପାଇଲେ। ସେମାନେ ଦେବୀଙ୍କୁ କହିଲେ, ''ମହାରାଜା ମହିଷାସୁର ତୁମର ପରିଚୟ ନେବାକୁ ଆମକୁ ପଠାଇଛନ୍ତି।''

ଦେବୀ କହିଲେ, ''ମୁଁ ଆସିଛି ମହିଷାସୁରଙ୍କ ସହ ଯୁଦ୍ଧ କରିବି। ଯୁଦ୍ଧରେ ଯଦି ପରାସ୍ତହେବି ତାହାହେଲେ ତାଙ୍କୁ ବିବାହ କରିବି। ତୁମେ ଏବେ ରାଜାଙ୍କୁ ଏକଥା ଜଣାଅ!''

ସେନାପତିଙ୍କଠାରୁ ଖବର ପାଇ ମହିଷାସୁର ଖୁବ୍ ଖୁସୀ ହେଲା। ସେ ଯୁଦ୍ଧପାଇଁ ପ୍ରସ୍ତୁତ ହୋଇ ଅସଂଖ୍ୟସୈନ୍ୟ, ରଥ, ହାତୀ ଓ ଘୋଡା ସଜକରି ବୀରବାଦ୍ୟ ବଜାଇ ବିନ୍ଧ୍ୟଗିରିରେ ପହଁଞ୍ଚିଲା। ସିଂହବାହିନୀ ଦଶଭୁଜା ଦେବୀଙ୍କୁ ଦେଖି ସେ ଯୁଦ୍ଧ କରିବାକୁ ଅଗ୍ରସର ହେଲା। ଦେବୀ ଓ ମହିଷାସୁର ମଧ୍ୟରେ ଘୋର ଯୁଦ୍ଧ ଲାଗିଲା।

ଏହି ସମୟରେ ଦେବୀ ଯୋଗିନୀମାନଙ୍କୁ ନିର୍ଦ୍ଦେଶ ଦେଲେ, ''ସବୁ ସୈନ୍ୟମାନଙ୍କୁ ମାରି ଖାଇଯାଅ।'' ଯୋଗିନୀଗଣ ଦେବୀଙ୍କ ଆଜ୍ଞା ପାଳନ କଲେ। ରାକ୍ଷସରାଜା ମହିଷାସୁର ସମସ୍ତ ସୈନ୍ୟଙ୍କୁ ହରାଇ ଶକ୍ତିହୀନ ହେଲା। ସେ ଦେବୀଙ୍କଠାରୁ ପରାସ୍ତ ହୋଇ ତାଙ୍କ ପାଦତଳେ ପଡିଲା। ସିଂହ ତା' ନଖ ଓ ଦାନ୍ତରେ ଆଘାତ କରି ମହିଷାସୁରର ଶରୀରକୁ ରକ୍ତାକ୍ତ କରିଦେଲା। ଏତିକିବେଳେ ଦେବୀ ମହିଷାସୁରର ଛାତିକୁ ଅମୋଘ ଅସ୍ତ୍ର ତ୍ରିଶୂଳରେ ବିଦ୍ଧକଲେ। ମହିଷାସୁର ଘୋର ଗର୍ଜନ କରି ପ୍ରାଣତ୍ୟାଗ କଲା।

ଦେବଗଣ ଚତୁର୍ଦ୍ଦିଗରୁ ଦେବୀଙ୍କ ଉପରେ ପୁଷ୍ପବୃଷ୍ଟିକରି କୃତଜ୍ଞତା ସହ ନମସ୍କାର କଲେ। ସେମାନେ ହାତଯୋଡି କହିଲେ, ''ହେ ମହାଦେବୀ! ତୁମେ ତିନିପୁରବାସୀଙ୍କ ଜୀବନରେ ଶାନ୍ତି ସ୍ଥାପନ କରିଥିବାରୁ ଆଜିଠୁଁ ତୁମ ନାମ ହେଲା ମା'ଆଦ୍ୟାଶକ୍ତି ମହିଷମର୍ଦ୍ଦିନୀ ଦୁର୍ଗତିନାଶିନୀ ଦୁର୍ଗା।''

ଯାଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ।



# ଦୁର୍ଗେ, ଦୁର୍ଗତିନାଶିନି !

ବହୁତ ଦିନ ତଳର କଥା। ଗୋଟିଏ ରାଜ୍ୟରେ ଜଣେ ଗରିବ ପଣ୍ଡିତ ଥିଲେ। ସେ ଥିଲେ ଖୁବ୍ ଦୁର୍ଗାଭକ୍ତ। ସଂସ୍କୃତ ଶାସ୍ତ୍ର ଓ ଜ୍ୟୋତିଷବିଦ୍ୟାରେ ମଧ୍ୟ ବିଶାରଦ। ପରିବାରରେ ତାଙ୍କର ସ୍ତ୍ରୀ ଓ ଗୋଟିଏ ଝିଅ। ଝିଅଟିର ନାମ ସର୍ବମଙ୍ଗଳା। ସର୍ବମଙ୍ଗଳାର ଯେପରି ସୁନ୍ଦର ରୂପ, ସେହିପରି ବୁଦ୍ଧିବିଦ୍ୟା। ପଣ୍ଡିତ ତାକୁ ବହୁବିଧ ଶାସ୍ତ୍ରରେ ମଧ୍ୟ ପାରଙ୍ଗମ କରାଇ ଦେଇଥାଆନ୍ତି।

ପଣ୍ଡିତ ଥିଲେ ଗ୍ରାମର ଦୁର୍ଗାମନ୍ଦିରରେ ପ୍ରଧାନ ପୂଜକ। ଏହା ବ୍ୟତୀତ ଯଜ୍ଞ, ହୋମ, ଦେବପୂଜା ଇତ୍ୟାଦି କରି ଯାହା ଦକ୍ଷିଣା ପାଆନ୍ତି, ସେଥିରେ ଚଳିଯାଆନ୍ତି। ସେ ଦେବୀଙ୍କ ଉପରେ ନିଜର ସମସ୍ତ ଦାୟିତ୍ୱ ଦେଇ ନିଶ୍ଚିନ୍ତ ରହିଥାଆନ୍ତି। ଝିଅର ବିବାହ ବୟସ ହେଲେ ବି ପାଖରେ ଧନ ନଥିବାରୁ ବିଭାଘର କରି ପାରୁନଥାନ୍ତି। ସେ ଦୁର୍ଗାଙ୍କୁ ହାତଯୋଡି ଜଣାଇଲେ, ''ହେ ମା' ଦୁର୍ଗତିନାଶିନି, ତୁମେ ଗୋଟିଏ ମାତ୍ର ଝିଅ ଦେଇଛ। ତା'ର ବିବାହ କରାଇବାକୁ ମୁଁ ଅକ୍ଷମ। ତୁମେ ସେ କାର୍ଯ୍ୟ ନିର୍ବାହ କର।'' ଏତିକିବେଳେ ଦେବୀଙ୍କ ମୁଣ୍ଡରୁ ଫୁଲଟିଏ ଖସି ପଡିଲା। ପଣ୍ଡିତ ଅତି ଖୁସିରେ ଦେବୀଙ୍କୁ ମୁଣ୍ଡିଆ ମାରିଲେ।

ସେହି ରାଜ୍ୟରେ ଜଣେ ଧନୀ ଜମିଦାର ଥିଲେ। ତାଙ୍କର ଏକ ଦୁର୍ଗାମନ୍ଦିର ଥାଏ। ସେଠାରେ ପ୍ରତିଦିନ ନୈଷ୍ଠିକ ବ୍ରାହ୍ମଣମାନେ ଷୋଡଶ ଉପଚାରରେ ଦେବୀ ପୂଜା କରନ୍ତି।



ଜମିଦାର ଓ ତାଙ୍କର ଏକମାତ୍ର ପୁତ୍ର ଦୁର୍ଗାଙ୍କର ପରମ ଭକ୍ତ। ପୁଅର ବିବାହ ବୟସ ହୋଇଥିବାରୁ ଜମିଦାର ପୁଅପାଇଁ କନ୍ୟା ଖୋଜୁଥାଆନ୍ତି। ବହୁତ ପ୍ରସ୍ତାବ ଆସିଲେ ମଧ୍ୟ କୌଣସି କନ୍ୟା ତାଙ୍କ ମନଲାଖି ହେଉ ନଥାଏ।

ଥରେ ସେ ଦୁର୍ଗାଙ୍କୁ ସ୍ମରଣ କରି ଘରକୁ ଫେରୁଥାଆନ୍ତି। ବାଟରେ ପଡ଼ିଲା ପଣ୍ଡିତଙ୍କ ଘର। ଘରବାହାରେ ସର୍ବମଙ୍ଗଳା ଠିଆ ହୋଇଥିଲା। ଜମିଦାର ତାକୁ ଦେଖି ଖୁବ୍ ଖୁସୀ ହେଲେ। ପଣ୍ଡିତଙ୍କୁ ଡକାଇ ଜମିଦାର କହିଲେ, ''ମୁଁ ତୁମ ଝିଅଟିକୁ ଦେଖିଲି। ମୋର ବୋହୂ ହେବାକୁ ସେ ଉପଯୁକ୍ତ ପାତ୍ରୀ। ମୋ ପୁଅକୁ ତ ଆପଣ ଜାଣିଥିବେ। ଏ ପ୍ରସ୍ତାବରେ ଆପଣଙ୍କ ମତ କ'ଣ ?''

ଜମିଦାରଙ୍କ କଥା ଶୁଣି ପଣ୍ଡିତ ଆଶ୍ଚର୍ଯ୍ୟ ହେଲେ। ସେ କହିଲେ, ''ଆପଣ ଜଣେ ଧନୀ ଜମିଦାର। ଏ ଖଣ୍ଡମଣ୍ଡଳରେ ଆପଣଙ୍କର ନାମଡାକ। ମୁଁ ଜଣେ ଗରିବ ଲୋକ। ଝିଅ ବିଭା ଦେଲେ, ଶଙ୍ଖେ ଜଳ ଟେକି କନ୍ୟାଦାନ ଦେବି। ଏଥିରେ ଯଦି ଆପଣଙ୍କର ଆପତ୍ତି ନାହିଁ ତା'ହେଲେ ମୋର କିଛି କହିବାର ନାହିଁ।'' ଜମିଦାର ଖୁସିରେ କନ୍ୟାପିତାଙ୍କୁ କୁଣ୍ଢାଇ ପକାଇ କହିଲେ, ''ଆପଣଙ୍କ ଝିଅଟିକୁ ମୁଁ କେବଳ ବୋହୂ କରିନେବି। ମୋର ଆଉ କିଛି ଦରକାର ନାହିଁ।''

ବିଭାଘର ଦିନ ସ୍ଥିର ହେଲା। ଖୁବ୍ ଆନନ୍ଦ ଉଲ୍ଲାସରେ ବିବାହ କାର୍ଯ୍ୟ ସରିଲା।

ଜମିଦାର ଆଣିଥିବା ସୁନା ମୁକୁଟ, ଅଳଙ୍କାର ସବୁ ବୋହୂକୁ ପିନ୍ଧାଇଲେ। ମନ ଆନନ୍ଦରେ ପୁଅ ବୋହୂଙ୍କୁ ନେଇ ଘରକୁ ଗଲେ।

ଝିଅକୁ ନ ଦେଖି ପଣ୍ଡିତଙ୍କୁ ଆଉ ଘର ଭଲ ଲାଗିଲା ନାହିଁ। ସେ ଯାଇ ଦୁର୍ଗାମଣ୍ଡପରେ ଦିନରାତି କଟାଇଲେ। ଦୁର୍ଗାପୂଜା ସମୟ ଆସିଲା। ଦିନେ ରାତିରେ ପଣ୍ଡିତ ସ୍ୱପ୍ନରେ ଦେଖିଲେ ଜଣେ ନାରୀମୂର୍ତ୍ତି ତାଙ୍କୁ କହୁଛନ୍ତି, "ତୁ କାଲି କାରିଗର ପାଖକୁ ଯାଇ ଏକ ଦୁର୍ଗାମୂର୍ତ୍ତି ଆଣି ତୋ ଘରେ ପୂଜା କରିବୁ।" ପଣ୍ଡିତ ଚମକି ଉଠିପଡି ମୁଣ୍ଡିଆ ମାରିଲେ। ସେ ନିଜର ନିତ୍ୟକର୍ମ ସାରି କାରିଗର ଘରକୁ ଗଲେ। ସେଠାରେ ଦେଖିଲେ ତିନିଫୁଟ ଉଚ୍ଚର ଦୁର୍ଗାମୂର୍ତ୍ତିଟିଏ ଥୁଆ ହୋଇଛନ୍ତି। କାରିଗର ଆଉ ଚିତ୍ରକର କାମରେ ଲାଗିଛନ୍ତି। ପଣ୍ଡିତ ପଚାରିଲେ, "ଏ ମୂର୍ତ୍ତିଟିର ମୂଲ୍ୟ କେତେ?" କାରିଗର କହିଲା, "ଶହେ ଟଙ୍କା।" ପଣ୍ଡିତ କହିଲେ, "ମୋ ପାଖରେ ଏତେ ଟଙ୍କା ନାହିଁ। ମୋ ପାଇଁ ପଚାଶ ପଇସାର ମୂର୍ତ୍ତିଟିଏ ଗଢିଦିଅ।" କାରିଗର ବିଦ୍ରୂପରେ ହସି କହିଲା, "ପଚାଶ ପଇସାରେ ଆଙ୍ଗୁଠି ପରି ଏକ ମୂର୍ତ୍ତି ହେବ। ଦେବୀମୂର୍ତ୍ତି ପରିବର୍ତ୍ତେ କଣ୍ଢେଇଟିଏ କ'ଣ ନେବ? ଯା...ଯା...।"

କାରିଗର କଥା ଶୁଣି ପଣ୍ଡିତଙ୍କ ଆଖିରୁ ଲୁହ ବୋହି ପଡିଲା। ସେ ସେଠାରୁ ପଳାଇଲେ। ଇଆଡେ କାରିଗର ଓ ଚିତ୍ରକରଙ୍କ ହାତ ଅଚଳ ହୋଇ ପଡିଲା। ସେମାନେ ବୁଝିଲେ, ଦେବୀଙ୍କ ଭକ୍ତକୁ ଅପମାନ ଦେବାରୁ ଦେବୀଙ୍କର କୋପ ହେଲା। କାରିଗର ଦେବୀଙ୍କ ମୂର୍ତ୍ତିକୁ ନେଇ ପଣ୍ଡିତଙ୍କ ଘରକୁ ଗଲା। ସେଠାରେ ତାଙ୍କୁ କ୍ଷମା ମାଗି ମୂର୍ତ୍ତିଟିକୁ ଦେଇ ଆସିଲା।

ପଣ୍ଡିତ ହାତଯୋଡି ଦେବୀଙ୍କୁ କହିଲେ, "ମା' ତୁମ ସ୍ୱଇଚ୍ଛାରେ ଏ ଗରିବ ଘରକୁ ଆସିଲ। ମହାସପ୍ତମୀରେ ତୁମର ପ୍ରତିଷ୍ଠା ଓ ପୂଜା ହେବ। ଅତି କମ୍‌ରେ ଶହେ ଆଠ ବ୍ରାହ୍ମଣ ଖାଇବେ। ଏହା ମୋର ସଙ୍କଳ୍ପ ନୁହେଁ। ତୁମ ପାଇଁ ବିଧିବିଧାନ। ମା', ଏସବୁ କାର୍ଯ୍ୟ କିପରି ହେବ ତୁମେ ଜାଣ।"

ପୂଜା ଦୁଇଦିନ ଥାଏ। ପଣ୍ଡିତଙ୍କର ଝିଅ ସର୍ବମଙ୍ଗଳା କଥା ମନେ ପଡିଲା। ସେ

ଝିଅ ଘରେ ଯାଇ ପହଞ୍ଚିଲେ। ସମୁଦିଙ୍କୁ କହିଲେ, ''ମୋ ଘରେ ପ୍ରଥମ ହୋଇ ଦୁର୍ଗାପୂଜା ହେବ। ଆଠଦିନ ପାଇଁ ଝିଅକୁ ନେବାକୁ ଆସିଛି।''

ସମୁଦି କହିଲେ, ''ମୋଘରେ ବି ଦୁର୍ଗାପୂଜା, ମୁଁ ବୋହୂକୁ ପଠାଇବି କିପରି ?''

ପଣ୍ଡିତ ସମୁଦିଙ୍କ କଥା ଶୁଣି ମନକଷ୍ଟରେ ଘରକୁ ଫେରିଲେ। ବହୁତ ବାଟ ଯିବା ପରେ ପଛରୁ ଡାକ ଶୁଭିଲା, ''ବାପା... !'' ପଣ୍ଡିତ ପଛକୁ ଚାହିଁ ଝିଅକୁ ଦେଖି ପଚାରିଲେ, ''ତୋ ଶ୍ୱଶୁର ତ ମନାକଲେ। ତୁ ଆସିଲୁ କିପରି ?'' ଝିଅ କହିଲା, ''ମୁଁ ବହୁତ କହିଲାରୁ ମୋତେ ଛାଡିଦେଲେ।''

ପୂଜାଦିନ ପଣ୍ଡିତ ଝିଅକୁ କହିଲେ, ''ମୁଁ ଦେବୀଙ୍କର ତିନିଧୂପ ପାଇଁ ତିନୋଟି ଥାଳୀରେ ଭୋଗ ସଜାଡି ରଖିଛି। ସେତିକି ପ୍ରସାଦ ବ୍ରାହ୍ମଣ ଖାଇବେ କିପରି ? ପେଟ ପୂରା ନ ଖାଇଲେ ମତେ ନିନ୍ଦା କରିବେ।''

ଝିଅ କହିଲା, ''ତୁମେ ଆଦୌ ଚିନ୍ତା କରନା ! ବ୍ରାହ୍ମଣମାନଙ୍କ ଖାଇବା ଦାୟିତ୍ୱ ମୋ ଉପରେ ରହିଲା।''

ଝିଅ କଥାକୁ ପଣ୍ଡିତଙ୍କର ଆଦୌ ବିଶ୍ୱାସ ହେଉ ନଥାଏ। ଯାହାହେଉ ସେ ପୂଜାରେ ବସିଲେ। ଝିଅକୁ କହିଲେ, "ଗୋଟିଏ ଥାଳୀ ବାଲ୍ୟଭୋଗ ପାଇଁ ଆଣ୍।" ଝିଅ ଥାଳୀ ଆଣି ରଖିଲା। ପଣ୍ଡିତ ଚଳୁଧରି ଆଖିବୁଜି ଧ୍ୟାନରେ ବସିଲେ। ଆଖି ଖୋଲିଲା ପରେ ଦେଖିଲେ, ଝିଅ ଅଧେ ଭୋଗ ଖାଇ ଦେଲାଣି। ସେ ଆଉ ନୈବେଦ୍ୟ ଦେବେ କ'ଣ, ଚଳୁକୁ ଫୋପାଡି ଦେଇ ରାଗିଯାଇ କହିଲେ, ''ହେ ଝିଅ ! ତତେ କିଏ ମନ୍ଦବୁଦ୍ଧି ଦେଲା ? ତୁ ଅମଣିଆକୁ ଅଇଁଠା କରି ଖାଇ ଦେବୀଙ୍କୁ ଉପବାସ ରଖିଲୁ ? ବ୍ରାହ୍ମଣ ତୋ ଅଇଁଷା ଖାଇବେ ? ଯା- ଏ ଘରୁ।'' ଝିଅ ବାହାରକୁ ଗଲା।

ପୁଣି ମଧ୍ୟାହ୍ନ ଭୋଗ ସମୟ ହେଲା। ପଣ୍ଡିତ ଝିଅକୁ କହିଲେ ଭୋଗଥାଳୀ ଆଣିବାକୁ। ପୂର୍ବପରି ପଣ୍ଡିତ ଆଖି ଖୋଲିବା ଆଗରୁ ଝିଅ ସର୍ବମଙ୍ଗଳା ଅଧେ ଭୋଗ ଖାଇଦେଲା। ସେହିପରି ରାତି ଧୂପ ସମୟରେ ମଧ ଝିଅ ଅଧେ ଭୋଗ ଖାଇଦେଲା। ପଣ୍ଡିତ ମୁଣ୍ଡରେ ହାତମାରି କହିଲେ, ''ପୂଜାରେ ବିଘ୍ନ ଘଟାଇଲୁ ! ଏହାର ଫଳ ପାଇବୁ। କହୁଥିଲୁ ବ୍ରାହ୍ମଣଙ୍କ

ଦାୟିତ୍ୱ ନେବୁ। ହେଇ ସବୁ ଆସିଗଲେଣି, ଏଥର ସମ୍ଭାଳ।'' ପଣ୍ଡିତ ଘର ଭିତରେ ଲୁଚି ରହିଲେ।

ସର୍ବମଙ୍ଗଳା ଶୀଘ୍ର ଯାଇ ପତ୍ର ପକାଇ ଦେଲା। ତିନୋଟି ଥାଳୀର ଅଇଁଷା ଭୋଗକୁ ଏକାଠି କରି ବୁଟ ପରିମାଣରେ ସବୁ ପତ୍ରରେ ପରଶି ଦେଲା। ବ୍ରାହ୍ମଣ ଯେତେ ଖାଉଥାନ୍ତି ପତ୍ର ପୂର୍ଣ୍ଣ ହୋଇ ଯାଉଥାଏ। ବାସନା ମହକି ଉଠୁଥାଏ। ବ୍ରାହ୍ମଣମାନେ ଭୋଜନରେ ସନ୍ତୁଷ୍ଟ ହେଲେ। ପଣ୍ଡିତଙ୍କୁ ବହୁତ ପ୍ରଶଂସା ଓ ଝିଅକୁ ଆଶୀର୍ବାଦ କଲେ। ସର୍ବମଙ୍ଗଳା ନିଜ ପଣତରୁ ଗଣ୍ଠି ଫିଟାଇ ଶହେ ଆଠ ସ୍ୱର୍ଣ୍ଣମୁଦ୍ରା ବ୍ରାହ୍ମଣଙ୍କୁ ଦକ୍ଷିଣା ଦେଲା। ସମସ୍ତେ ଖୁସୀ ହୋଇ ଘରକୁ ଫେରିଲେ।।

ପଣ୍ଡିତ ଝିଅ ପାଖକୁ ଆସି କହିଲେ, ''ମା, ଏପରି ଅଲୌକିକ ଘଟଣା ଘଟିଲା କିପରି?'' କିନ୍ତୁ ଝିଅ ହଠାତ୍ ଉଭେଇଗଲା। ପଣ୍ଡିତ ବହୁତ ଖୋଜିଲେ। ଘର ବାହାର ଖୋଜିଲେ, କିନ୍ତୁ ଝିଅକୁ ପାଇଲେ ନାହିଁ। ଭାବିଲେ, ଝିଅକୁ ବହୁତ ଗାଳି ଦେଲି। ସେଥିପାଇଁ ସେ ମନଦୁଃଖ କରି ଶାଶୁଘରକୁ ପଳାଇଲା। ଏପରି ଭାବି ସେ ରାତିରେ ଝିଅ ପାଖକୁ ଗଲେ ଓ ପଚାରିଲେ, ''ମା, ତୁ ଏକାହୋଇ ପଳାଇ ଆସିଲୁ?'' ଝିଅ କହିଲା, ''ମୁଁ ଏଠାରୁ ତ ଯାଇ ନାହିଁ।'' ଝିଅଠାରୁ ଏପରି ଶୁଣି ପଣ୍ଡିତ ଘରକୁ ଫେରିଲେ। ଘରେ ପହଞ୍ଚି ସେ ଯାହା ଦେଖିଲେ ଆଶ୍ଚର୍ଯ୍ୟ ହୋଇଗଲେ। ମାଟିଘର ପକ୍କାରେ ପରିଣତ ହୋଇ ଧନଦ୍ରବ୍ୟରେ ପରିପୂର୍ଣ୍ଣ ହୋଇ ଯାଇଛି। ସ୍ତ୍ରୀକୁ ଦେଖିଲେ। ତା' ହାତରେ ଶଙ୍ଖା, ବେକର କାଚମାଳି, ମଇଳା ଲୁଗା ତା'ର ନାହିଁ; ସେ ସୁନା ଗହଣାରେ ମଣ୍ଡିତ ହୋଇ ପାଟଲୁଗା ପିନ୍ଧି ବସିଛି। ଏପରି ଦେଖି ଦେବୀଙ୍କୁ ହାତଯୋଡି ଜଣାଇଲେ, ''ମା! ଝିଅ ରୂପରେ ଆସି ମୋ'ଠାରୁ ଗାଳି ଖାଇଲ! ମୁଁ ତୁମକୁ ଚିହ୍ନି ପାରିଲି ନାହିଁ। ହେ ମା' ଦୁର୍ଗତିନାଶିନି, ମୋ ଦୋଷ କ୍ଷମା କର।'' ସ୍ୱାମୀ, ସ୍ତ୍ରୀ ଦୁହେଁ ଦୁର୍ଗାଦେବୀଙ୍କ ପାଦତଳେ ଲମ୍ବ ହୋଇ ପଡିଗଲେ।



# ମହାଭାରତର ମହାନ୍ କଥା

ଧୃତରାଷ୍ଟ୍ର ଓ ପଣ୍ଡୁ ନାମରେ ଦୁଇଜଣ ରାଜା ଥିଲେ । ସେମାନେ ଦୁଇ ଭାଇ । ପଣ୍ଡୁ ବାରୁଣାବନ୍ତର ରାଜା ଓ ଧୃତରାଷ୍ଟ୍ର ହସ୍ତିନାର ରାଜା । ହସ୍ତିନାଠାରୁ ବାରୁଣାବନ୍ତ ବାରଶହ କୋଶ ଦୂର । ପଣ୍ଡୁ ରାଜାଙ୍କର ପାଞ୍ଚପୁତ୍ର- ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ । ସେମାନେ ପାଣ୍ଡବ ନାମରେ ଖ୍ୟାତ । ଧୃତରାଷ୍ଟ୍ରଙ୍କର ଶହେ ପୁଅ- ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି କୌରବ ନାମରେ ପରିଚିତ ।

ପାଣ୍ଡବଙ୍କୁ କୌରବମାନେ ସବୁବେଳେ ହିଂସା ଦୃଷ୍ଟିରେ ଦେଖୁଥିଲେ । ଥରେ କୌରବମାନେ ପାଣ୍ଡବମାନଙ୍କୁ ବାରୁଣାବନ୍ତରୁ ହସ୍ତିନାପୁରକୁ ନିମନ୍ତ୍ରଣ କରି ଆଣିଲେ ଓ ପଶା ଖେଳିବାକୁ ଘିରକଲେ । ଅସୁବିଧାରେ ପଡି ପାଣ୍ଡବମାନଙ୍କୁ ରାଜ୍ୟ, ଧନ, ସିଂହାସନ ଓ ଏପରିକି ତାଙ୍କର ପତ୍ନୀ ଦ୍ରୌପଦୀଙ୍କୁ ବାଜି ରଖିବାକୁ ପଡିଲା । ଖେଳ ଦେଖିବା ପାଇଁ କୁରୁସଭା ଲୋକାରଣ୍ୟ ହୋଇଗଲା । କୁରୁରାଜା ଆଗରୁ କୌଶଳ କରିଥିଲା, କିପରି ପାଣ୍ଡବମାନଙ୍କୁ ଖେଳରେ ହରାଇବ । ପାଣ୍ଡବଙ୍କୁ ବାଜି ରଖିବା କଥା ବାରମ୍ବାର କହିଲା ।

ଧର୍ମରାଜ ଯୁଧିଷ୍ଠିର ଉତ୍ତର ଦେଲେ, ''ପଣ ରଖିବା ଖେଳକୁ ଦ୍ୟୁତକ୍ରୀଡା କୁହାଯାଏ । ପଣ୍ଡିତ ବ୍ୟକ୍ତି କହନ୍ତି, ଏ ପ୍ରକାର ଖେଳରେ ଯଶହାନି ହୁଏ । ତେଣୁ ଦ୍ୟୁତକ୍ରୀଡା ମହାପାପ ଅଟେ ।'' ଖଳ ଦୁର୍ଯ୍ୟୋଧନ କଳି ସୃଷ୍ଟି କରିବାକୁ ଯୁଧିଷ୍ଠିରଙ୍କୁ ପୂର୍ବ ସର୍ତ୍ତରେ ରାଜି କରାଇଲା । ଖେଳ ଆରମ୍ଭ ହେଲା ଓ ବହୁ ସମୟ ଧରି ଚାଲିଲା । ଶେଷରେ ପାଣ୍ଡବମାନେ



ହାରିଗଲେ । ସର୍ତ୍ତ ଅନୁସାରେ ପତ୍ନୀ ଦ୍ରୌପଦୀ, ରାଜ୍ୟ, ଧନ, ରତ୍ନଭଣ୍ଡାର ଇତ୍ୟାଦି ଏପରିକି ନିଜ ଉପରେ ମଧ ପାଣ୍ଡବଙ୍କର ଅଧିକାର ରହିଲା ନାହିଁ। କୌରବମାନେ ଆନନ୍ଦରେ ଜୟ ଧ୍ୱନି କରି ଉଠିଲେ। ପାଣ୍ଡବ ପାଞ୍ଚଭାଇ ଲଜ୍ଜା ଓ ଅପମାନରେ ସଭାସ୍ଥଳରେ ତଳକୁ ମୁହଁପୋତି ବସିଲେ। କୌରବଙ୍କ ଜୟନାଦ ପାଣ୍ଡବଙ୍କ ହୃଦୟକୁ ବିଦୀର୍ଣ୍ଣ କଲା।

କୁରୁ ସଭାରେ ପିତାମହ ଭୀଷ୍ମ, ଗୁରୁ ଦ୍ରୋଣ, କର୍ଣ୍ଣ, ମାମୁଁ ଶକୁନି ଇତ୍ୟାଦି ବସିଛନ୍ତି। ରାଜା ଦୁର୍ଯ୍ୟୋଧନ ପାଣ୍ଡବମାନଙ୍କୁ ଲଜ୍ଜିତ କରାଇବାକୁ ଇଚ୍ଛାକରି ଭାଇ ଦୁଃଶାସନକୁ ଡାକି ଆଦେଶ ଦେଲା, ‘‘ଶୀଘ୍ର ବାରୁଣାବନ୍ତ ଯାଇ ପାଣ୍ଡବମାନଙ୍କର ପତ୍ନୀ ଦ୍ରୌପଦୀର କେଶ ଧରି ଏହି ସଭାକୁ ଘେନିଆସ।’’

ଦୁର୍ଯ୍ୟୋଧନର ଆଦେଶ ପାଇ ଦୁଃଶାସନ ବାରୁଣାବନ୍ତରେ ପହଞ୍ଚି ଜୟଧ୍ୱନି କରି ରାଜ୍ୟକୁ ଚମକାଇ ଦେଲା। ଭୟପାଇ ଲୋକେ କିଏ କୁଆଡେ ଲୁଚିଗଲେ। ଦୁଃଶାସନ ପାଣ୍ଡବଙ୍କ ସିଂହଦ୍ୱାରରେ ଯାଇ ପହଞ୍ଚିଲା। ଦ୍ୱାରୀମାନେ ବାଟ ଛାଡିଲେ ନାହିଁ। ପାଣ୍ଡବଙ୍କ ମାତା କୁନ୍ତୀ ଆସି ବଳପୂର୍ବକ ଭିତରେ ନପଶିବାକୁ ଦୁଃଶାସନକୁ ବହୁତ ବୁଝାଇଲେ। ଦୁଃଶାସନ କୌଣସି କଥା ନଶୁଣି ରକ୍ଷୀ ଓ କୁନ୍ତୀଙ୍କୁ ଠେଲି ଫୋପାଡି ଦେଇ ଜବରଦସ୍ତ ଅନ୍ତଃପୁରରେ ପ୍ରବେଶ କରି ଦ୍ରୌପଦୀଙ୍କ କେଶ ଧରି କୁରୁସଭା ମଧ୍ୟରେ ଆଣି ଠିଆ କରାଇ ଦେଲା।

ମହାସତୀ ଦ୍ରୌପଦୀ ସଭା ମଝିରେ ଲଜ୍ଜା ଓ ଅପମାନରେ ଜର୍ଜରିତ ହୋଇ ତାଙ୍କ ସ୍ୱାମୀ ପାଣ୍ଡବମାନଙ୍କୁ ବହୁ କଟୂବାକ୍ୟ କହିଲେ ମଧ ଧର୍ମରାଜ ଯୁଧିଷ୍ଠିର ଦ୍ରୌପଦୀଙ୍କ ନିର୍ଯ୍ୟାତନାର ପ୍ରତିକାର ପାଇଁ ଭାଇମାନଙ୍କୁ ଅନୁମତି ଦେଲେ ନାହିଁ।

ଦୁର୍ଯ୍ୟୋଧନ ଦ୍ରୌପଦୀ ଓ ପାଣ୍ଡବମାନଙ୍କ ଅବସ୍ଥାକୁ ଚାହିଁ ଉପହାସ କରି କହିଲା, "ଆଜି ଦେଖିବା ତୁମର ପଞ୍ଚସ୍ୱାମୀ କିପରି ତୁମକୁ ରକ୍ଷା କରିବେ?" ଦୁର୍ଯ୍ୟୋଧନର କଥା ଶୁଣି ଦ୍ରୌପଦୀ ବେଶୀ ଅପମାନିତ ହେଲେ। ସେ ତତ୍କ୍ଷଣାତ୍ ଭଗବାନଙ୍କୁ ମନରେ ସ୍ମରଣ କଲେ। ଏହା ଦେଖି କୁରୁରାଜା ପୁଣି ବିଦ୍ରୂପ ବାକ୍ୟରେ ଦ୍ରୌପଦୀଙ୍କୁ କହିଲା, "ତୁମର ଶ୍ରୀକୃଷ୍ଣ କିପରି ତୁମକୁ ରକ୍ଷା କରିବେ ଆଜି ଦେଖିବା!" ଦୁର୍ଯ୍ୟୋଧନର ଅପମାନ ଶୁଣି ଦ୍ରୌପଦୀ କ୍ରୋଧରେ କହିଲେ, "ହେ କୁରୁରାଜ ! ଯାହାର ନାମ ଧରି ପଶୁ ପକ୍ଷୀ ମଧ ବିପଦରୁ ରକ୍ଷା ପାଇଛନ୍ତି ସେ ସର୍ବଭୂତର ଆତ୍ମା। ତାଙ୍କୁ ଯେ ମୁଖରେ ନିନ୍ଦାକରେ, ସେ ନିଶ୍ଚୟ କୁଫଳ ପାଇଥାଏ। ତୁମେ ଅକାରଣରେ ଚକ୍ରପାଣି ଶ୍ରୀକୃଷ୍ଣଙ୍କୁ ନିନ୍ଦା କରିଛ। ଦିନେ ହେଲେ ତା'ର ପ୍ରତିଫଳ ପାଇବ! ଉଦାହରଣ ସ୍ୱରୂପ ସତ୍ୟଯୁଗର ଗୋଟିଏ ଗଳ୍ପ ମୋଠାରୁ ଶୁଣ।"

ଦ୍ରୌପଦୀ କହିଲେ- ଗୋଟିଏ ଘୋର ଅରଣ୍ୟରେ ସିଂହଟିଏ ଥିଲା। ସେହି ଜଙ୍ଗଲରେ ଗୋଟିଏ ପୁଷ୍କରିଣୀ ଥିଲା। ଦିନେ ଗୋଟିଏ ଠେକୁଆ ତୃଷାର୍ତ୍ତ ହୋଇ ସେଠାକୁ ପାଣି ପିଇବାକୁ ଗଲା। ଜଳଘାଟରେ ପହଞ୍ଚିବା ମାତ୍ରେ ସିଂହଟିକୁ ଦେଖିଲା। ତାକୁ ଦେଖି ନିରୀହ ଠେକୁଆଟି ଥରିବାକୁ ଲାଗିଲା। ସିଂହ ନିଜର ଅତି ନିକଟରେ ଠେକୁଆକୁ ଦେଖି ଖାଇବାକୁ ଧାଇଁଲା। ଠେକୁଆଟି ଜୀବନ ବିକଳରେ ଡିଆଁମାରି ଦୌଡି ପଳାଇଲା। ସିଂହ ଠେକୁଆ ପଛରେ କୁଦାମାରି ଗୋଡାଇଲା। ଠେକୁଆଟି ବଣ ଭିତରେ ବହୁତ ଦୌଡି ହାଲିଆ ହୋଇ ଗୋଟିଏ ଗର୍ତ୍ତ ଦେଖି ତା' ଭିତରେ ପଶିଗଲା। ସେ ଗର୍ତ୍ତରେ ଗୋଟାଏ ବିଲୁଆ ଥିଲା। ତାକୁ ଦେଖି ଠେକୁଆ ଭୟରେ ଥରିବାକୁ ଲାଗିଲା। ବିଲୁଆ ମଧ ଠେକୁଆକୁ ଦେଖି ଖୁସୀହୋଇ ଖାଇବାକୁ ଆସିଲା।

ଠେକୁଆ ଭୟରେ ଅଧୀର ହୋଇ ଭାବିଲା, ସିଂହ ମୁଖରୁ ରକ୍ଷା ପାଇବାକୁ ଏହି

ଗର୍ତ୍ତ ମଧ୍ୟରେ ପଶି ବିଲୁଆ ମୁହଁରେ ପଡିଲି। ବର୍ତ୍ତମାନ ନିଶ୍ଚୟ ମୋର ମରଣ ହେଲା ! ଏଠାରୁ ପଳାଇ ଯିବାର କୌଣସି ଉପାୟ ନାହିଁ। ଏଣୁ ଜୀବନ ବିକଳରେ ଠେକୁଆଟି ଭଗବାନଙ୍କୁ ଡାକିଲା, "ହେ ଗୋବିନ୍ଦ ! ମୋତେ ରକ୍ଷାକର। ତୁମେ ନରଖିଲେ ଏଠାରେ ମୋର ପ୍ରାଣ ଗଲା।" ଠେକୁଆର ଡାକ ଭଗବାନ ଶୁଣିଲେ। ଠେକୁଆ ଶୁଣିପାରିଲା, "ତୁ ଭୟ କରନାହିଁ। ମୁଁ ତୋତେ ରକ୍ଷାକଲି।" ଭଗବାନ ଏହିପରି କହି ଠେକୁଆ କଣ୍ଠରେ ବିଜେ ହେଲେ। ଠେକୁଆର ଭୟ ଦୂର ହୋଇ ତାକୁ ବହୁତ ବୁଦ୍ଧି ଦେଖାଗଲା।

ବିଲୁଆ ଠେକୁଆକୁ ଖାଇବା କଥା ନିଶ୍ଚିତ ଜାଣି ଆନନ୍ଦରେ ପଚାରିଲା, "ତୁ କାହିଁକି ଆସିଲୁ ?" ଠେକୁଆ ହାତଯୋଡି ଉତ୍ତର ଦେଲା, "ମୋତେ ବଣର ସବୁ ଜନ୍ତୁମାନେ ପଠାଇଛନ୍ତି। ଆପଣଙ୍କୁ ଏଠାରୁ ନେଇ ଯିବାକୁ ଏହାର କାରଣ ବନର ସବୁ ପଶୁଙ୍କର ଆପଣ ରାଜା ହେବେ। ସମସ୍ତେ ଭୃତ୍ୟପରି ଆପଣଙ୍କ ଚରଣ ସେବା କରିବେ।"

ଠେକୁଆ କଥା ଶୁଣି ବିଲୁଆ ଅତି ଖୁସୀ ହୋଇ କହିଲା, "ମୁଁ ଯଦି ରାଜା ହେବି ତୋତେ ମନ୍ତ୍ରୀ କରାଇ ଦେବି। ଚାଲ୍, ଗର୍ତ୍ତରୁ ବାହାରି ବଣକୁ ଯିବା।"

ଠେକୁଆ ହାତଯୋଡି ବିଲୁଆକୁ କହିଲା, "ଆପଣ ରାଜପଦକୁ ଭାଜନ ! ମୁଁ ଛାର ସେବକ ମାତ୍ର। ତେଣୁ ଆପଣ ଆଗରେ ଚାଲନ୍ତୁ, ମୁଁ ପଛରେ ଯିବି।" ଏହା କହି ଠେକୁଆ କଡେଇ ହୋଇଗଲା। ବିଲୁଆ ରାଜା ହେବାକୁ ବ୍ୟଗ୍ର, ସେ ଠେକୁଆର ଛନ୍ଦବାକ୍ୟ ବୁଝିପାରିଲା ନାହିଁ। ଅତି ଖୁସୀ ହୋଇ ଗାତ ଭିତରୁ ଉପରକୁ ବାହାରି ପଡିଲା। ସିଂହ ଗାତ ମୁହଁରେ ଠେକୁଆକୁ ଜଗି ବସିଥିଲା। ବିଲୁଆ ଭିତରୁ ବାହାରିବା ମାତ୍ରେ ସିଂହ ତାକୁ ମାଡିବସି ନେଇ ଚାଲିଗଲା। କିଛି ସମୟ ପରେ ଠେକୁଆ ଗର୍ତ୍ତ ମୁହଁକୁ ବାହାରି ଚାରିଆଡକୁ ଚାହିଁଲା। ସିଂହ ଓ ବିଲୁଆଙ୍କୁ ନଦେଖି ମନ ଖୁସିରେ ବାହାରକୁ ଆସିଲା। ମନେ ମନେ ଗୋବିନ୍ଦଙ୍କୁ ସ୍ମରଣ କରି ସେଠାରୁ ଦୌଡି ପଳାଇଲା।

ଦ୍ରୌପଦୀ କହିଲେ, "ହେ କୁରୁରାଜ, ଶୁଣିଲଟ ! ଭଗବାନଙ୍କ ଆଶ୍ରୟ ନେବାରୁ ଦୁଇଟି ହିଂସ୍ର ଜନ୍ତୁଙ୍କ ମୁଖରୁ ଠେକୁଆ କିପରି ରକ୍ଷା ପାଇଲା ? ତୁମେ ସେହି ହରିଙ୍କୁ ନିନ୍ଦା କରୁଅଛ, ଯାହାଙ୍କୁ ଚିନ୍ତିଲେ ଦୁର୍ଗତି ରହେନାହିଁ।" ଦ୍ରୌପଦୀଙ୍କର କଥା ଶୁଣି

ଦୁର୍ଯ୍ୟୋଧନ ଅତ୍ୟନ୍ତ ରାଗିଯାଇ କହିଲା, ‘‘ତୋର ଭଗବାନ କିପରି ତୋତେ ରକ୍ଷା କରିବେ ଆଜି ଦେଖିବା ?’’ ଏହିପରି କହି ଦୁଃଶାସନକୁ ଆଦେଶ ଦେଲା, ‘‘ଏହି ସଭା ମଧ୍ୟରେ ଦ୍ରୌପଦୀକୁ ବସ୍ତ୍ରହୀନ କରିଦିଅ !’’ ଏହାଶୁଣି ଦ୍ରୌପଦୀ ଶ୍ରୀଭଗବାନଙ୍କୁ ପୁନର୍ବାର ପ୍ରାର୍ଥନା କଲେ ।

ଶ୍ରୀକୃଷ୍ଣ ଦ୍ୱାରକାପୁରରେ ଥିଲେ । ଦ୍ରୌପଦୀଙ୍କ ଡାକ ଶୁଣିବା ମାତ୍ରେ ସେ ଗରୁଡ ଉପରେ ବସି ହସ୍ତିନାପୁରକୁ ଉଡି ଆସିଲେ । ଦେଖିଲେ ଦ୍ରୌପଦୀ ହାତଯୋଡି ଠିଆ ହୋଇଛନ୍ତି । ଦ୍ରୌପଦୀଙ୍କୁ ଅଭୟବାଣୀ ଶୁଣାଇ କହିଲେ, ‘‘ଚିନ୍ତା କରନା, ତୁମେ ବହୁ ଦରିଦ୍ରଙ୍କୁ ବସ୍ତ୍ରଦାନ କରିଅଛ ! ତାହାସବୁ ସୂର୍ଯ୍ୟାଲୋକରେ ଜମାହୋଇ ରହିଅଛି । ତୁମେ କଦାପି ବସ୍ତ୍ରହୀନ ହେବ ନାହିଁ, ଭୟ ତ୍ୟାଗ କର ।’’

ଏହିପରି କହି ଶ୍ରୀକୃଷ୍ଣ ସୂର୍ଯ୍ୟଦେବଙ୍କୁ ଆଦେଶ ଦେଲେ । ସୂର୍ଯ୍ୟ ତାଙ୍କ ସ୍ତ୍ରୀ ଛାୟା ଓ ମାୟାଙ୍କୁ ଛପନକୋଟି ବସ୍ତ୍ର ଦେଇ ପଠାଇଦେଲେ । ଭଗବାନ ଦ୍ରୌପଦୀଙ୍କ ବସ୍ତ୍ର ସଙ୍ଗେ ସେ ସବୁକୁ ସଂଯୋଗ କଲେ ଓ ନିଜ ଚକ୍ର ଉହାଡରେ ରଖିଲେ । ଛାୟା ଓ ମାୟାଙ୍କୁ ଦ୍ରୌପଦୀଙ୍କ ଦୁଇ ପାର୍ଶ୍ୱରେ ଜଗାଇଲେ ।

ଦୁଃଶାସନ ଦ୍ରୌପଦୀଙ୍କ ଅଙ୍ଗରୁ ବସ୍ତ୍ର ଭିଡି ଭିଡି ଥକିଗଲା । ଯେତେ ବସ୍ତ୍ର କାଢିଲେ



ମଧ୍ୟ ସେତେ ବାହାରୁଛି। ଭଗବାନ ଶୂନ୍ୟରେ ରହି ଚକ୍ର ମଧ୍ୟରୁ ବସ୍ତ୍ର ଖସାଉଛନ୍ତି। ଛାୟା ଓ ମାୟା ଦ୍ରୌପଦୀଙ୍କ ଅଙ୍ଗରେ ବାସ ସଜାଡୁଛନ୍ତି। ଦ୍ରୌପଦୀଙ୍କ ଦେହରୁ ବସ୍ତ୍ର ସରିଲା ନାହିଁ। କୁରୁ ସଭାସଦ୍‌ମାନେ ଆଶ୍ଚର୍ଯ୍ୟ ହେଲେ, ରାଜା ଦୁର୍ଯ୍ୟୋଧନ ମଧ୍ୟ ଲାଜରେ ତଳକୁ ମୁହଁ ପୋତିଲା।

ରାଜା ଦୁର୍ଯ୍ୟୋଧନଙ୍କ ପତ୍ନୀ ଭାନୁମତୀ। ସେ ଅନ୍ତଃପୁରରେ ଥିଲେ। ହଠାତ୍ ତାଙ୍କ ଲୁଗାରେ ନିଆଁ ଲାଗି ଜଳି ଉଠିଲା। ସେ ବିକଳ ଚିତ୍କାର କରି ଦାଣକୁ ଧାଇଁଆସି ଭୂମିରେ ଗଡିଲେ। ତାଙ୍କ ପାଟି ଶୁଣି ସଭାଜନମାନେ ଆସି ରୁଣ୍ଡ ହୋଇଗଲେ। ରାଣୀ ଭାନୁମତୀଙ୍କର ଏପରି ଅବସ୍ଥା ଦେଖି ସମସ୍ତେ ଜାଣିଲେ ଦୁର୍ଯ୍ୟୋଧନଙ୍କ ସ୍ୱକୃତ କାର୍ଯ୍ୟ ପାଖରେ ଏହା ଏକ ଦୈବୀକୃତ କାର୍ଯ୍ୟ ହେଲା। ସମସ୍ତେ ପରସ୍ପର ମୁହଁକୁ ଚାହିଁ ନୀରବ ରହିଲେ। କଥାରେ ଅଛି, ''ଯେ ପାଞ୍ଚେ ପର ମନ୍ଦ, ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ।''



# ଷଷ୍ଠୀପୂଜା ଓ ବିରାଡି

ଅନେକ ବର୍ଷ ତଳର କଥା । ଜଣେ ଧନୀ ସୌଦାଗର ଥିଲେ । ସେ ତାଙ୍କର ସ୍ତ୍ରୀ, ଦୁଇପୁଅ, ଦୁଇ ବୋହୂ ଓ ନାତିମାନଙ୍କ ସହ ଆନନ୍ଦରେ ରହୁଥିଲେ । ସେମାନେ ସମସ୍ତେ ସତ୍ୟବାଦୀ ଓ ଧର୍ମପରାୟଣ ଥିଲେ ଏବଂ ଦେଶ ବିଦେଶରେ ବାଣିଜ୍ୟ କରି ଅତି ଧନୀ ହୋଇଥିଲେ ।

ସାଧବଙ୍କ ଘରେ ଷଷ୍ଠୀଦେବୀଙ୍କୁ ଇଷ୍ଟଦେବୀ ରୂପେ ପୂଜାକରି ଆସୁଥିଲେ । ସେମାନେ ବହୁ ଅର୍ଥ ବ୍ୟୟ କରି ତିନିହାତ ଉଚ୍ଚର ସୁନା ଦେବୀମୂର୍ତ୍ତି ନିର୍ମିତ କରି ତାଙ୍କୁ ହୀରା ନୀଳା ଖଚିତ ଅଳଙ୍କାରରେ ଖଞ୍ଜି ଦେଇଥିଲେ । ନିଜ ଘରେ ମନ୍ଦିର କରି ଦେବୀଙ୍କୁ ସିଂହାସନରେ ବିରାଜମାନ କରାଇଥାନ୍ତି । ଷଷ୍ଠୀଦେବୀଙ୍କର ବାହନ କଳାବିରାଡି । ତେଣୁ ତାଙ୍କ ପାଦ ପାଖରେ ସୁନାର ବିରାଡି ମୂର୍ତ୍ତିଟିଏ ପୂଜା ପାଉଥାଏ । ଷଷ୍ଠୀଦେବୀ ହେଉଛନ୍ତି ଭାଗ୍ୟଦେବୀ ।

ପିଲାଟିଏ ଜନ୍ମହେଲେ ଛଅଦିନ ରାତିରେ ଷଷ୍ଠୀପୂଜା ହୁଏ । ସେଇଦିନ ରାତିରେ ପିଲାର ଭାଗ୍ୟରେ ଯାହା ଲେଖିବା କଥା ଷଷ୍ଠୀଦେବୀ ଲେଖି ଦିଅନ୍ତି । ଏହା ଏକ ପୌରାଣିକ ଉପାଖ୍ୟାନ ଓ ଜନମତ ।

ସୌଦାଗର ଘରେ ସମସ୍ତେ ଶ୍ରଦ୍ଧା, ଭକ୍ତି ଓ ନିଷ୍ଠାସହ ଦେବୀ ଉପାସନା କରନ୍ତି । କିନ୍ତୁ ବଡ ବୋହୂର ଦେବଭକ୍ତି ନଥିବାରୁ ସେ ପୂଜା ସ୍ଥାନକୁ ଦର୍ଶନ ପାଇଁ ମଧ୍ୟ ଯାଏ



ନାହିଁ। ସେମାନେ ଗୋଟିଏ କଳାବିରାଡି ପୋଷିଥାନ୍ତି। ପୂଜା ସ୍ଥାନକୁ ସେଇ ବିରାଡିକୁ ନେଇ ଯାଆନ୍ତି। ଜ୍ୟେଷ୍ଠମାସ ଶୁକ୍ଳ ଷଷ୍ଠୀଦିନ ଅତି ସମାରୋହରେ ପୂଜା ହୁଏ। ବହୁତ ଲୋକଙ୍କୁ ପ୍ରସାଦ ବିତରଣ କରାଯାଏ। ତାଙ୍କ ଘରେ ଦୁଧ, ଘିଅ ରହିବା ପାଇଁ ଏକ ଭଣ୍ଡାର 'ଘର ଥିଲା। ରାବିଡ଼ି, ରସାବଳି ଇତ୍ୟାଦି ଅନେକ ପ୍ରକାର ଭୋଗ ସେ ଘରେ ଗୋଟିଏ ପାଖରେ ରହେ ଏବଂ ଘରର ଆଉ ଗୋଟିଏ କଡରେ ବ୍ୟବହାର୍ଯ୍ୟ କ୍ଷୀର, ଦହି, ଘିଅ ପ୍ରଭୃତି ରହେ। ଘରଟିର ତାଲା ବନ୍ଦ ଥାଏ। ପ୍ରତିଦିନ ରାତିରେ ବଡବୋହୂ ଚାବି ନେଇ ପିଲାଙ୍କ ପାଇଁ ଖାଦ୍ୟ ଆଣିବା ବେଳେ ତା'ର ବହୁତ ଲୋଭ ହୁଏ। ସେ ସବୁ ଭୋଗରୁ କିଛି କିଛି ଖାଇ ଅଇଣ୍ଠା କରିଦିଏ। ସକାଳୁ ସାଧବାଣୀ ଭୋଗ ନେବାକୁ ଆସି ଦେଖନ୍ତି ପ୍ରତ୍ୟେକ ଭୋଗଥାଳୀ ଖଣ୍ଡିଆ ହୋଇଛି। ତାଙ୍କ ମନରେ ବହୁତ ସନ୍ଦେହ ହେଲା। ବଡବୋହୂ ପ୍ରତିଦିନ ରାତିରେ ଭଣ୍ଡାରଘର ଖୋଲି ପିଲାଙ୍କ ପାଇଁ ଖାଦ୍ୟ ଆଣେ। ଶାଶୁ ବଡ ବୋହୂକୁ ଡାକି ପଚାରିଲେ, "ଭୋଗସବୁ ଖଣ୍ଡିଆ ହେଉଛି କିପରି ?" ବଡବୋହୂ କହିଲା, "ମୁଁ ଘର ଖୋଲିବା ମାତ୍ରେ ସେ କଳାବିରାଡି ଦୌଡି ଯାଇ ସବୁ ଭୋଗରୁ ପୂଳାଏ ପୂଳାଏ ଖାଇଯାଏ। ମୁଁ ସେଥିପାଇଁ ସବୁଦିନେ ତାକୁ ଗୋଇଠା ମାରେ।" ଏପରି କହି ଅଗଣାରେ ବସିଥିବା ବିରାଡିକୁ ଗୋଇଠା ମାରି ଗଡାଇ ଦେଲା।

ଶାଶୁ, ଶ୍ୱଶୁର ବଡ ବୋହୂକୁ ବହୁତ ଗାଳିଦେଲେ। ସେମାନେ କହିଲେ, "ବିରାଡି ପ୍ରତିଦିନ ଦେବୀଙ୍କ ପାଖରେ ଫୁଲ ଚନ୍ଦନ ଦିଆହୋଇ ପୂଜା ହେଉଛି। ତାକୁ ଗୋଇଠା ମାରିଲେ ଠାକୁର ତୋ ଉପରେ ଅସନ୍ତୁଷ୍ଟ ହେବେ।"

ତା'ପରଦିନ କଥା। ବଡ ବୋହୂ ତା'ର ସାତୋଟି ପୁଅଙ୍କୁ ନେଇ ରାତିରେ ଶୋଇଥିଲା। ସକାଳୁ ଉଠି ଦେଖିଲା ତା'ର ପୁଅମାନେ ନାହାନ୍ତି। କବାଟ ଫିଟିନାହିଁ। ପିଲାମାନେ ଗଲେ କୁଆଡେ। ବଡବୋହୂ ବହୁତ କାନ୍ଦିଲା, ବାଡେଇ କଚାଡି ହେଲା। କିନ୍ତୁ ପିଲାମାନେ ମିଳିଲେ ନାହିଁ। ସୌଦାଗରର ଘରେ ଦୁଃଖର ଛାୟା ଖେଳିଗଲା। ଘରଲୋକ ଓ ପଡୋଶୀମାନେ ବଡବୋହୂକୁ ବହୁତ ଗାଳିଦେଲେ।

ସେଇଦିନ ରାତିରେ ବଡବୋହୂ ମନଦୁଃଖରେ ଘର ଛାଡି ଚାଲିଗଲା। ସେ ଯାଇ ଏକ ଅଗନାଅଗନି ବନସ୍ତରେ ପହଞ୍ଚିଲା। ସେଠାରେ ଦିନରେ ଖରା ଓ ରାତିରେ ତାରା ଦେଖାଯାଏ ନାହିଁ। ହିଂସ୍ରଜନ୍ତୁଙ୍କ ରଡି ଓ ପକ୍ଷୀମାନଙ୍କ ରାବ ଛଡା ସେଠାରେ ଆଉ କିଛି ନାହିଁ। ସାତପୁଅଙ୍କୁ ଡାକି କାନ୍ଦି କାନ୍ଦି ସେ ମୂର୍ଚ୍ଛା ହୋଇଗଲା। ଏହିପରି ସାତଦିନ କଟିଗଲା। ଷଷ୍ଠୀଦେବୀଙ୍କ ମନରେ ଦୟା ହେଲା।

ଦେବୀ ପଚାରିଲେ, "ତୁ କିଏ, କ'ଣ ପାଇଁ କାନ୍ଦୁଛୁ?"

ସାଧବବୋହୂ ତା'ର ସାତପୁଅ କିପରି ଘରଭିତରୁ ଅନ୍ତର୍ଧାନ ହୋଇଗଲେ ସେ କଥା ଦେବୀଙ୍କୁ ଜଣାଇଲା।

ସୌଦାଗରର ବୋହୂ କାନ୍ଦି କାନ୍ଦି ତାଙ୍କ ପାଦତଳେ ପଡିଯାଇ କହିଲା, "ହେ ଦୟାମୟୀ ମା, ମୁଁ ତୁମ ପାଖରେ ଯେଉଁ ଘୋର ଅପରାଧ କରିଛି ମତେ କ୍ଷମା କରିଦିଅ! ମୋ ସାତ ପୁଅଙ୍କୁ ମୋତେ ଫେରାଇ ଦିଅ!"

ଘରକୁ ଫେରି ଦେବୀଙ୍କ କଥା ମାନି ସାଧବ ବୋହୂ ବିରାଡିକୁ ପଞ୍ଚାମୃତରେ ଧୋଇଦେଲା। ଠିକ୍ ଏତିକିବେଳେ ସାତପୁଅ ଆସି ତା' ଉପରେ ଲଦିହୋଇ ପଡିଲେ। ସାଧବବୋହୂ ପିଲାମାନଙ୍କୁ ନେଇ ସମସ୍ତଙ୍କ ସହିତ ଆନନ୍ଦରେ ରହିଲା।



# ପଞ୍ଚେନ୍ଦ୍ରିୟ

ଥରେ ଇନ୍ଦ୍ରିୟମାନେ ନିଜ ନିଜର ବଡପଣ ଦେଖାଇବାରୁ ସେମାନଙ୍କ ମଧ୍ୟରେ କଳିଗୋଳ ହେଲା। ସମସ୍ତେ ନିଜକୁ ବଡ ବୋଲି କହିଲେ। ତାଙ୍କ ମଧ୍ୟରେ କିଏ ବଡ, ଏହି ଅଡୁଆ ତୁଟି ପାରୁ ନଥାଏ। ଦିନକୁ ଦିନ ଯୁକ୍ତିତର୍କ ବଢୁଥାଏ। ତାଙ୍କ କଳି ଆଉ ଛିଣିଲା ନାହିଁ।

ଆଖି ଗର୍ବର ସହିତ କହିଲା, ''ସମସ୍ତେ ଶୁଣ! ମୁଁ ସମସ୍ତଙ୍କ ଠାରୁ ଶ୍ରେଷ୍ଠ। ମୁଁ ନଥିଲେ ପ୍ରାଣୀ ଚଳି ପାରିବ ନାହିଁ। ଆଉସବୁ ଇନ୍ଦ୍ରିୟ ନଥିଲେ ଚଳିଯିବ।''

ଆଖି ପରେ କାନ କହିଲା, ''ସମସ୍ତେ ଶୁଣ! ମୁଁ ନଥିଲେ ଲୋକେ ଅଚଳ ହୋଇଯିବେ। ଭଲ ବା ମନ୍ଦ କୌଣସି କଥା ଶୁଣି ପାରିବେ ନାହିଁ। ଜଡ ପାଲଟି ଯିବେ।''

ବାକ୍ କହିଲା, ''ମୁଁ ନଥିଲେ ପ୍ରାଣୀ କ୍ଷଣେ ସଚଳ ହେବନାହିଁ, ଖାଲି ଭେଁ...ଭେଁ.. ଶବ୍ଦ କରି କାଠ ପିତୁଳା ପରି ହୋଇଯିବ।''

ବାକ୍ ପରେ ବୀର ଦର୍ପରେ ମନ କହିଲା, ''ମୁଁ ସମସ୍ତଙ୍କଠାରୁ ବଳୀୟାନ୍। ମୁଁ ନଥିଲେ ପ୍ରାଣୀର କୌଣସି ଜ୍ଞାନ ରହିବ ନାହିଁ। ମୋ ବଳରେ ଲୋକେ ଜ୍ଞାନ-ବିଜ୍ଞାନ ହାସଲ କରିଥାଆନ୍ତି।''

ପ୍ରାଣ ସମସ୍ତଙ୍କ କଥାଶୁଣି କାହାରିକୁ କିଛି ନକହି ମୁରୁକି ହସା ଦେଉଥାଏ। ସେ

ଖାଲି ଭାବୁଥାଏ- ଦେଖାଯାଉ, କେଉଁ ପାଣି କୁଆଡେ ଯାଉଛି !

ଏହିପରି ଗୋଟିକୁ ଗୋଟି ନିଜ ବଡପଣିଆ କହିଦେଲେ। କିନ୍ତୁ କଳି ଛିଣ୍ଡିଲା ନାହିଁ। ସମସ୍ତେ ବିଚାର କଲେ, ଆମର ଏହି ଗଣ୍ଡଗୋଳ କ'ଣ ସବୁଦିନେ ଲାଗି ରହିଥିବ ! ଚାଲ, ବ୍ରହ୍ମାଙ୍କ ପାଖକୁ ଯିବା। ସେ ସୃଷ୍ଟିକର୍ତ୍ତା। ଆମର ଏ ସମସ୍ୟାର ନିଷ୍ପତ୍ତି କରିଦେବେ। ଏହିପରି ସ୍ଥିର କରି ବ୍ରହ୍ମାଙ୍କ ପାଖକୁ ଯାଇ ସବୁକଥା କହିଲେ ଏବଂ ଅନୁରୋଧ କଲେ, "ହେ ସୃଷ୍ଟିକର୍ତ୍ତା ! ଆମ୍ଭମାନଙ୍କ ମଧ୍ୟରେ କିଏ ବଡ, ଆପଣ ସ୍ଥିର କରି ଦିଅନ୍ତୁ।"

ବ୍ରହ୍ମା ଏମାନଙ୍କର ବିବାଦ ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେମାନେ ଶରୀରର ପରିଚାଳକ। ଏକଥା ପିଲା ଠାରୁ ବୁଢା ପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି। ବୃଥାରେ ଏପରି



କଳିଗୋଳ କରିବା ତୁମର ଉଚିତ ନୁହେଁ। ତଥାପି ମୁଁ କହୁଛି, ତୁମମାନଙ୍କ ମଧ୍ୟରୁ କିଏ ବଡ ବାଛିବା ଅତି ସହଜ। ଅଳ୍ପକେ ଏହା ଜଣା ପଡିଯିବ। ତାହାହେଲା ତୁମେମାନେ ଜଣକ ପରେ ଜଣେ ପ୍ରାଣୀର ଶରୀର ଛାଡି ଚାଲିଯାଅ। ସେତିକିବେଳେ ମୋର ଏହି କଥାଟି ଭାବି ଦେଖୁଥିବ, ଯଥା- ତୁମମାନଙ୍କ ମଧ୍ୟରୁ ଯେ ପ୍ରାଣୀର ଶରୀର ଛାଡି ଚାଲିଗଲେ ପ୍ରାଣୀ ଆପେ ଅଚଳ ହୋଇ ମୃତ ପରି ହୋଇଯିବ, ସେହି ଇନ୍ଦ୍ରିୟ ହିଁ ସବୁଠାରୁ ବଡ।''

ଇନ୍ଦ୍ରିୟମାନେ ବ୍ରହ୍ମାଙ୍କ ପରାମର୍ଶ ପାଇ ବହୁତ ଖୁସୀ ହେଲେ। ତାଙ୍କ ଆଦେଶ ଅନୁଯାୟୀ ଗୋଟିଏ ପରେ ଗୋଟିଏ ପରୀକ୍ଷା ନିମନ୍ତେ ପ୍ରସ୍ତୁତ ହୋଇଗଲେ।

ପ୍ରଥମେ ବାକ୍‌ଶକ୍ତି ଦେହ ଛାଡି ଚାଲିଗଲା। ଲୋକେ କଥା କହି ପାରିଲେ ନାହିଁ। ଲୋକମାନେ ଠରାଠରି କରି କୌଣସି ପ୍ରକାର ଚଳିଗଲେ, ଅଥଚ ଶରୀରର କିଛି କ୍ଷତି ହେଲାନାହିଁ।

କିଛିଦିନ ପରେ ବାକ୍ ଇନ୍ଦ୍ରିୟ ଫେରି ଆସି ଶରୀରକୁ ପଚାରିଲା, ''ହେ ଶରୀର! ତୁମେ କିପରି ଅଛ?'' ଶରୀର ଉତ୍ତର ଦେଲା, ''ମୋତେ ସାମାନ୍ୟ ଅସୁବିଧା ହେଲେ ମଧ୍ୟ ଭଲ ଅଛି। କେବଳ ଖନା ଭଳି କଥା କହି ଚଳିବାକୁ ପଡୁଛି।'' ଶରୀର କଥା ଶୁଣି ବାକ୍ ଇନ୍ଦ୍ରିୟ ମୁଣ୍ଡ ତଳକୁ କଲା। ସେ ଭାବିଥିଲା ତା' ଅଭାବରେ ଶରୀର ଅଚଳ ହୋଇ ମରିଯିବ। କିନ୍ତୁ ସେ ଦେଖୁଛି ଶରୀରର କୌଣସି କ୍ଷତି ହୋଇନାହିଁ। ସେ କାହାରିକୁ କିଛି ନକହି ପୂର୍ବପରି ଦେହରେ ଯାଇ ଚୁପ୍ ହୋଇ ରହିଲା।

ଚକ୍ଷୁ ବାକ୍‌ଶକ୍ତିର ଏ ଦୁର୍ଦ୍ଦଶା ଦେଖି କହିଲା, ''ମୁଁ ଜାଣେ, ବାକ୍‌ଶକ୍ତି ଗଲେ ଶରୀରର କିଛି କ୍ଷତି ହେବନାହିଁ। ଫଳରେ ତାହାହିଁ ହେଲା। ସେହିପରି ତୁମେ ସବୁ ନିଜକୁ ବଡ ମନେକରି ବୃଥା ଅସ୍ଫାଳନ କରୁଛ ସିନା, ଏବେ ଦେଖ ମୁଁ ଚାଲିଯାଉଛି। ଦେଖିବ, ତୁମମାନଙ୍କର ଅବସ୍ଥା କ'ଣ ହେବ!'' ଏହିପରି କହି ଦୃଷ୍ଟିଶକ୍ତି କିଛିଦିନ ପାଇଁ ବିଦାୟ ନେଇ ଗଲା।

କିଛିଦିନ ପରେ ସେ ପୁଣି ଫେରି ଆସିଲା। ସେ ଭାବିଥିଲା ତା' ଅଭାବରେ

ଶରୀର ମୃତପରି ଅଚଳ ହୋଇଯିବ। ସେ ଦେଖିଲା ଯେ ଶରୀର ଠିକ୍ ଅଛି, କିଛି କ୍ଷତି ହୋଇନାହିଁ। ଏପରି ଦେଖି ତା' ମନରେ ବହୁତ କଷ୍ଟ ହେଲା। ସେ ଶରୀରକୁ ପଚାରିଲା, "ହେ ଭାଇ! ମୁଁ ଯିବାପରେ ତୁମେ କିପରି ଥିଲ?" ଶରୀର କହିଲା, "ବେଶୀ କିଛି ଅସୁବିଧା ହୋଇନାହିଁ। ତୁମେ ନଥିବାରୁ କେବଳ ଅନ୍ଧ ହୋଇ ଚଳିବାକୁ ହେଲା। ଅନ୍ଧମାନେ ତ ଚଳୁଛନ୍ତି, ଆଉ ବିଶେଷ ଅସୁବିଧା ଏଥିରେ କ'ଣ ଅଛି?"

ଚକ୍ଷୁ ଶରୀରର କଥା ଶୁଣି ଲାଜରେ ଆଉ କାହାକୁ କିଛି ନକହି ଚୁପ୍ କରି ତା'ସ୍ଥାନରେ ରହି ନିଜର କାର୍ଯ୍ୟ କଲା।

ତା'ପରେ ପାଳି ପଡିଲା କାନର।

ଶ୍ରବଣେନ୍ଦ୍ରିୟ ମନରେ ବହୁତ ଟାଣ ବାନ୍ଧି କିଛିଦିନ ପାଇଁ ବାହାରକୁ ଚାଲିଗଲା। ଫେରିଆସି ଶରୀରକୁ ପଚାରିଲା, "ଭାଇ! କିପରି ଅଛ?" ଶରୀର କହିଲା, "କିଛି ଅସୁବିଧା ହୋଇନାହିଁ। ଏତେକ ଦିନ କେବଳ କାଲ ହୋଇ ଚଳିବାକୁ ପଡିଲା।" ଶ୍ରବଣେନ୍ଦ୍ରିୟ ଏପରି ଶୁଣି ହିଂସା ଛାଡି ପୁଣି ଦେହରେ ରହି ତା' କାର୍ଯ୍ୟ କଲା।

ଏଥର ପାଳି ଆସିଲା ମନର। ସେ ଅନ୍ୟମାନଙ୍କୁ ଟାଣପଣ ଦେଖାଇ କହିଲା, "ତୁମ ପ୍ରତିପତ୍ତି ସବୁ ଜଣା ପଡିଲା। ବର୍ତ୍ତମାନ ମୋର ପାଳି, ମୁଁ ଶରୀର ଛାଡିଲେ କ'ଣ ଘଟିବ ଲକ୍ଷ୍ୟ ରଖିଥାଅ। ମୁଁ ହେଉଛି ମନ-ରାଜା! ତୁମେ ସବୁ ମୋର ପ୍ରଜା। ମୋ ହୁକୁମରେ ତୁମେ ପରିଚାଳିତ। ରାଜା ନଥିଲେ ରାଜ୍ୟ ଯେପରି ଛାରଖାର ହୁଏ, ମୁଁ ଶରୀର ଛାଡି ଚାଲିଗଲେ ତୁମ ଅବସ୍ଥା ତାହାହିଁ ହେବ। ଏବେ ଦେଖ! କିଛିଦିନ ପାଇଁ ମୁଁ ଚାଲି ଯାଉଛି।" ଏହିପରି କହି ମନ ଦେହ ଛାଡି ବାହାରକୁ ଚାଲିଗଲା। ମନ କିଛିଦିନ ପରେ ଫେରିଆସି ଶରୀରକୁ ପଚାରିଲା, "ମୋ ଅଭାବରେ ତୁମେ କିପରି ଥିଲ?"

ଶରୀର କହିଲା, "ତୁମର ପ୍ରାଧାନ୍ୟ କ'ଣ କିଛି ଜଣା ପଡିଲା ନାହିଁ। ତୁମ ଅଭାବରେ କେବଳ ବର୍ଷଟିଏ ଛୋଟ ପିଲାଙ୍କ ଭଳି ଚଳିବାକୁ ହେଲା। ବିଶେଷ ଅସୁବିଧା ହୋଇନାହିଁ।" ମନ ଶରୀରଠାରୁ ଏପରି ଶୁଣି ବହୁ ଅପମାନିତ ହେଲା। ସେ ଆଉ

କିଛି ନକହି ଦେହରେ ପ୍ରବେଶ କଲା ।

ଏଥର ପ୍ରାଣର ପାଳି ପଡିଲା । ପ୍ରାଣ ସମସ୍ତଙ୍କୁ କହିଲା, "ହେ ଭାଇମାନେ ! ତୁମେମାନେ ଗୋଟିକ ପରେ ଗୋଟିଏ ଯେଉଁ ପରୀକ୍ଷା ଦେଲ ତା'ର ଫଳରୁ ସବୁ ଜଣାଗଲା । ଏଥର କିଛିଦିନ ପାଇଁ ମୁଁ ବାହାରକୁ ଯାଉଛି ।" ପ୍ରାଣ ଏହିପରି କହି ଦେହ ଛାଡିବାକୁ ସଜ ହେଲା । ସେ ଠିକ୍ ଯିବାକୁ ବାହାରୁଛି ଏଥର ଦେହର ସବୁ ଅବୟବମାନେ ଥରି ଉଠିଲେ । ଆୟରାଧୀନ ହେଲେ ନାହିଁ ।

ଏତିକିବେଳେ ଚକ୍ଷୁ, କର୍ଣ୍ଣ, ବାକ୍ ଓ ମନ ସମସ୍ତଙ୍କ ଭିତରେ ଆତଙ୍କ ଖେଳିଗଲା । ସମସ୍ତେ ଡରିଯାଇ ଏକା ସ୍ୱରରେ କହିଉଠିଲେ, "ହେ ଭାଇ ! ତୁମେ ଆମକୁ ଛାଡି କଦାପି ଯାଅନାହିଁ କି ସେ କଥା ଆଉ ଉଠାଅ ନାହିଁ । ଆମେ ଈର୍ଷାପରାୟଣ ହୋଇ ଯେଉଁ ଦୋଷ କଲୁ, ଆମକୁ ସେଥିପାଇଁ କ୍ଷମା ଦିଅ । ତୁମଲାଗି ଆମେ ବଞ୍ଚି ରହିଛୁ । ତୁମେ ଚାଲିଗଲେ ଆମେ ସବୁ ମରିଯିବୁ । ତୁମର ପରୀକ୍ଷା ଆମେ ଲୋଡୁନାହୁଁ । ଏବେ ଦୟାକରି ଆମକୁ ବଞ୍ଚାଅ । ଏଥର ଜଣା ପଡିଲା ଯେ ତୁମେ ଆମମାନଙ୍କ ମଧ୍ୟରେ ବଡ । ତୁମକୁ କୋଟି କୋଟି ନମସ୍କାର !"



# ସତ୍ୟ ଓ କଳି

ପୁରାଣଯୁଗର କଥା। ଯେଉଁ ମାଘ ଅମାବାସ୍ୟା ଦିନ ଭଗବାନ ଶ୍ରୀକୃଷ୍ଣ ଗୋଟିଏ ଅଶ୍ୱତ୍ଥ ବୃକ୍ଷମୂଳେ ଜରାଶବରର ଶରାଘାତରେ ପ୍ରାଣତ୍ୟାଗ କଲେ, ସେଦିନ ଦ୍ୱାପର ଯୁଗ ଶେଷ ହେଲା। ଏହି ଦିନଟିକୁ ତ୍ରିବେଣୀ ଅମାବାସ୍ୟା କୁହାଯାଏ। ଲୋକମାନେ ପ୍ରୟାଗ ତ୍ରିବେଣୀ ତୀର୍ଥରେ ସ୍ନାନ କରି ଶ୍ରୀକୃଷ୍ଣଙ୍କ ଦେହତ୍ୟାଗ ଦିବସକୁ ସ୍ମରଣ କରନ୍ତି।

ଦ୍ୱାପର ପରେ କଳିଯୁଗର ଆରମ୍ଭ ହେଲା। ଫଳରେ ପ୍ରାଣୀମାନଙ୍କ ମନରେ ନାନାଦି କୁ-ଗୁଣ ପ୍ରବେଶ କଲା। ମନୁଷ୍ୟମାନେ ଲୋଭ, ହିଂସା, କୂଟକପଟ ଇତ୍ୟାଦି ଜାଲରେ ଛନ୍ଦି ହୋଇଗଲେ। ଦେବତାମାନେ ଏହା ଦେଖି କଳି କିପରି ମାନବଜଗତରେ ଅଧିକ ଅନ୍ୟାୟ ସୃଷ୍ଟି ନ କରିବ, ସେଥିପାଇଁ ମର୍ତ୍ତ୍ୟପୁରରେ ଏକ ସଭା କରିବାକୁ ସ୍ଥିର କଲେ।

ପ୍ରବାଦ ଅଛି, ମର୍ତ୍ତ୍ୟପୁରରେ ଦେବତାମାନେ ଯେଉଁଠାରେ ସଭା ବସାଇଥିଲେ ସେ ସ୍ଥାନଟି ଢେଙ୍କାନାଳ ସହରଠାରୁ ଉତ୍ତରରେ ପଚିଶ କିଲୋମିଟର ଦୂର କପିଳାସ ପର୍ବତ ଶିଖରରେ। ପ୍ରତି ପୂର୍ଣ୍ଣିମା ରାତ୍ରିରେ ଦେବତାମାନେ ସେଠାରେ ସଭା କରନ୍ତି। ଏହା ସେଠିକାର ଜନମତ।

ଥରେ ଏହି ଦେବସଭାକୁ ସତ୍ୟ ଯାଉଥାଆନ୍ତି। ବାଟରେ କଳି ସହିତ ତାଙ୍କର ଦେଖାହେଲା। ସେମାନଙ୍କ ମଧ୍ୟରେ ଅହିନକୁଳ ସମ୍ବନ୍ଧ। କେହି କାହାକୁ ସହି ପାରନ୍ତି ନାହିଁ। କଳିକୁ ଦେଖିବା ମାତ୍ରେ ସତ୍ୟ ଘୃଣାପୂର୍ଣ୍ଣ କଣ୍ଠରେ କହିଲେ, ''ତୁ ମର୍ତ୍ତ୍ୟପୁରରେ



ପ୍ରବେଶ କରିବା ମାତ୍ରେ କେତେ ଶୀଘ୍ର ପ୍ରାଣୀମାନଙ୍କୁ ମିଥ୍ୟା, ଅନ୍ୟାୟ ଓ ଅଜ୍ଞାନ ପ୍ରକୃତିରେ ବଶୀଭୂତ କରିଦେଲୁ! ସେଥିପାଇଁ ଦେବତାମାନେ ମର୍ତ୍ତ୍ୟପୁରରେ ସଭା କରିବାକୁ ଆସିଛନ୍ତି। ହେ କଳି! କାହିଁକି ତୋ ଦୁର୍ଲ୍ଲଭ ଜନ୍ମକୁ ବୃଥା କରୁଛୁ?''

ସତ୍ୟଙ୍କଠାରୁ ଏପରି ଶୁଣି ରାଗିଯାଇ କଳି କହିଲା, ''ତୁ କିଏ? ତୋର ପରିଚୟ ନଦେଲେ ତୋ ପ୍ରଶ୍ନର ଉତ୍ତର ଦେବିନାହିଁ।'' ସତ୍ୟ ଧୀର ସ୍ୱରରେ କହିଲେ, ''ମୋ ସହିତ ତୋର ପରିଚୟ ଅଛି। ତୁ ମୋର ପରମ ଶତ୍ରୁ ଏବଂ ଅନ୍ୟାୟ ଆଚରଣ ଦେଖାଇ ମୋତେ ଅପମାନ ଦେବାକୁ ତୁ ଖୁବ୍ ଭଲପାଉ। ଯାହାର ଛାଇ ପଡିଲେ

ତୁ ଭୟରେ ଲୁଚିରହୁ, ମୁଁ ସେହି ସତ୍ୟ।''

ସତ୍ୟଙ୍କର କଟୁବାକ୍ୟ ଶୁଣି କଳି ଶରୀରରେ କଣ୍ଟା ଫୋଡିହେବା ଭଳି ଜଣାଗଲା। ସେ କମ୍ପିଉଠି କହିଲା, ''ଜଗତରେ ମିଛ ନଥିଲେ, ସତର କିଛି ମୂଲ୍ୟ ନଥାନ୍ତା। ସେହିପରି ପାପ ନଥିଲେ ପୂଣ୍ୟ ଏବଂ ଅଶାନ୍ତି ନଥିଲେ ଶାନ୍ତିର ମାହାତ୍ମ୍ୟ ପ୍ରକାଶ ହୋଇ ନଥାନ୍ତା। ସେହିପରି ଅବିଶ୍ୱାସ ନଥିଲେ ବିଶ୍ୱାସ, ଦୁଃଖ ନଥିଲେ ସୁଖ, ଅଜ୍ଞାନ ନଥିଲେ ଜ୍ଞାନର ପରିପ୍ରକାଶ ହୋଇପାରି ନଥାଆନ୍ତା। ମୁଁ ମନ୍ଦ ହୋଇ ନଥିଲେ ତୁ ଭଲ ହୁଅନ୍ତୁ କିପରି ?''

କଳିର ଭାଷଣକୁ ଭୃକ୍ଷେପ ନକରି ସତ୍ୟ କହିଲେ, ''ମୋର ନାମ ସତ୍ୟ। ମୁଁ ଧର୍ମର ବନ୍ଧୁ। ତେଣୁ ଲୋକେ ମୋତେ ଶ୍ରଦ୍ଧାରେ ପୂଜା କରନ୍ତି। ମୋ ଦୟାରୁ ମନୁଷ୍ୟ ସମସ୍ତ ସଦ୍‌ଗୁଣରେ ଭୂଷିତ ହୋଇ ଜ୍ଞାନୀ ରୂପେ ପରିଚିତ ହୁଏ। ତୋର ନାମ କଳି। ତୁ ପାପର ବନ୍ଧୁ। ତୋ ଯୋଗୁ ମନୁଷ୍ୟ ଖଳ ସ୍ୱଭାବ ନେଇ ଜୀବନ ବିତାଏ। ମୁଁ ସୂର୍ଯ୍ୟୋଲୋକ ପରି ସ୍ୱଚ୍ଛ। କିନ୍ତୁ ତୁ ଅମାବାସ୍ୟା ରାତ୍ରିର ଅନ୍ଧକାର ସ୍ୱରୂପ !''

ସତ୍ୟ ପୁଣି କହିଲେ, ''ହେ ଦୁର୍ମତି କଳି ! ତୋର ଦୁଷ୍ଟ ବୁଦ୍ଧି ଯୋଗୁ ପ୍ରାଣୀମାନେ ହିଂସା ଓ ମିଥ୍ୟାରେ ଲିପ୍ତ ରହି ନାନାଦି କ୍ଳେଶ ପାଆନ୍ତି। ଫଳରେ ମୁଁ ନାରାୟଣଙ୍କୁ ସ୍ମରଣ କରେ ଓ ଭଗବାନ ତୋର ବିନାଶ ପାଇଁ ଅବତାର ଗ୍ରହଣ କରନ୍ତି।''

ସତ୍ୟଙ୍କର କୋମଳ କଣ୍ଠର ଏହି ବାକ୍ୟ ଶ୍ରବଣ କରି କଳି ଗର୍ଜନ କରି କହିଲା, ''ତୁ ମୋର ଚିର ଶତ୍ରୁ। ଆଜି ତୋତେ ବିନାଶ କରି ମୁଁ ଶତ୍ରୁ-ମୁକ୍ତ ହେବି।'' ଏହା କହି ନିଜର ଅସ୍ତ୍ରଚାଳନା କରିବାକୁ ଲାଗିଲା। କିନ୍ତୁ କଳିର ଅସ୍ତ୍ର ସତ୍ୟଙ୍କୁ ସ୍ପର୍ଶକରି ପାରିଲାନି। କଳିର ଅସ୍ତ୍ରରୁ ଯେଉଁ ସହଚରମାନେ ଆବିର୍ଭୂତ ହେଲେ ସେମାନେ ହେଲେ- ହିଂସା, ଦ୍ୱେଷ, କ୍ରୋଧ, ଲୋଭ, ମୋହ, ଅହଂକାର, ଅଧର୍ମ, ଦୁର୍ମତି, କୂଟ, କପଟ ଇତ୍ୟାଦି।

ସତ୍ୟ ମଧ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଲେ। ତାଙ୍କର ଅସ୍ତ୍ର ଚାଳନା ମାତ୍ରେ ସତ୍ୟଙ୍କର ଯେଉଁ ସହଚରମାନେ ଉପସ୍ଥିତ ହେଲେ ସେମାନେ ହେଲେ- ସତ୍, ଶୁଚୀ, ଦୟା, କ୍ଷମା,



ସାଧୁତା, ବିନୟ, ପରୋପକାର, ଅହିଂସା, ଶ୍ରଦ୍ଧା, ସଂଯମ, ଧର୍ମ, ସୁଖ, ସୌଭାଗ୍ୟ, ଭକ୍ତି, ନମ୍ରତା, ହର୍ଷ, ପୌରୁଷ, ତେଜ, ଜୟ, ବିଜୟ, ଶାନ୍ତି, ପ୍ରୀତି, ମୈତ୍ରୀ ଇତ୍ୟାଦି।

ଉଭୟଙ୍କ ମଧ୍ୟରେ ଦୀର୍ଘ ସମୟ ଧରି ଯୁଦ୍ଧ ଚାଲିଲା। କିନ୍ତୁ କଳିର ଅସ୍ତ୍ର ସତ୍ୟଙ୍କୁ ସ୍ପର୍ଶ କରି ପାରିଲା ନାହିଁ। ସତ୍ୟଙ୍କ ଅସ୍ତ୍ରର ତେଜ ଦେଖି କଳି ଭୟରେ ଛଦ୍ମଭଙ୍ଗ ଦେଇ ଆତ୍ମଗୋପନ କଲା। ସତ୍ୟଙ୍କର ସହଚରମାନେ ଆନନ୍ଦରେ ଜୟଧ୍ୱନି କଲେ- ସତ୍ୟର ଜୟ...ସତ୍ୟର ଜୟ..।



# ଗୁରୁ ଦକ୍ଷିଣା

ମହାଭାରତ ଯୁଗର କାହାଣୀ। ଏହି ଭାରତବର୍ଷରେ ଧୃତରାଷ୍ଟ୍ର ଓ ପଣ୍ଡୁ ନାମରେ ଦୁଇଜଣ ରାଜା ଥିଲେ। ସେମାନେ ଦୁଇଭାଇ। ଧୃତରାଷ୍ଟ୍ରଙ୍କର ପୁତ୍ର ଦୁର୍ଯ୍ୟୋଧନ, ଦୁଃଶାସନ ପ୍ରଭୃତି କୌରବ ନାମରେ ଏବଂ ପଣ୍ଡୁ-ରାଜାଙ୍କର ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ ଓ ସହଦେବ ପାଞ୍ଚପୁତ୍ର ପାଣ୍ଡବ ନାମରେ ପରିଚିତ। ରାଜପୁତ୍ରମାନଙ୍କୁ ଧନୁର୍ବିଦ୍ୟା ଶିକ୍ଷା ଦେବାକୁ ଭୀଷ୍ମଦେବ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କୁ ଅସ୍ତ୍ରଗୁରୁ ରୂପେ ନିଯୁକ୍ତ କରିଥିଲେ। ରାଜକୁମାରମାନେ ଗୁରୁଙ୍କଠାରୁ ପ୍ରତିଦିନ ଅସ୍ତ୍ରବିଦ୍ୟା ଶିକ୍ଷା କରନ୍ତି।

ଥରେ ଜଣେ ଶବରର ପୁଅ ଆସି ଦ୍ରୋଣାଚାର୍ଯ୍ୟଙ୍କ ଆଶ୍ରମରେ ପହଞ୍ଚି ତାଙ୍କୁ ପ୍ରଣାମ କଲା। ତାକୁ ଦେଖି ଗୁରୁ ତା'ର ପରିଚୟ ଓ ଆସିବାର କାରଣ ପଚାରିଲେ। ଶବରବାଳକ ହାତଯୋଡି କହିଲା, ''ମୋର ନାମ ଏକଲବ୍ୟ। ମୁଁ ଧନୁର୍ବିଦ୍ୟା ଶିକ୍ଷା କରିବାକୁ ଆପଣଙ୍କ ନିକଟକୁ ଆସିଛି।''

ତା' କଥା ଶୁଣି ଗୁରୁ-ଦ୍ରୋଣ ବଡ ଅଡୁଆରେ ପଡିଲେ। କାରଣ ଗୁରୁ ଜାଣିଲେ ଯେ ତାଙ୍କଠାରୁ ଧନୁର୍ବିଦ୍ୟା ଶିକ୍ଷା କରିବାକୁ ବାଳକଟିର ପ୍ରବଳ ଇଚ୍ଛା ଅଛି। ସେ ଭାବିଲେ, ଯଦି ଏହାକୁ ଶିଷ୍ୟ ରୂପେ ଗ୍ରହଣ କରିବେ ରାଜପୁତ୍ରମାନଙ୍କ ମର୍ଯ୍ୟାଦା ହାନି ହେବ। ପିତାମହ ଭୀଷ୍ମଦେବ ଅସନ୍ତୁଷ୍ଟ ହେବେ। ସେ ବହୁତ ଚିନ୍ତାକରି କହିଲେ, ''ବତ୍ସ ଏକଲବ୍ୟ! ତୋର ଇଚ୍ଛା ପୂରଣ କରିବାକୁ ମୁଁ ଅସମର୍ଥ। ତୁ ଫେରିଯା!''



ଏକଲବ୍ୟ ପ୍ରଥମରୁ ହିଁ ଦ୍ରୋଣାଚାର୍ଯ୍ୟଙ୍କୁ ନିଜର ଗୁରୁ ବୋଲି ସ୍ଥିର କରି ସାରିଥିଲା। ତାଙ୍କ କଥା ଶୁଣି ସେ ହାତଯୋଡି କହିଲା, ''ମହାଭାଗ! ମୁଁ ଆପଣଙ୍କ ଶିଷ୍ୟତ୍ୱ ଗ୍ରହଣ କରିବାକୁ ଘରଛାଡି ଆସିଛି। ଆପଣଙ୍କ ମନରେ କଷ୍ଟ ଦେବାକୁ ଇଚ୍ଛା କରୁନାହିଁ। ମତେ ଏତିକି ଦୟା କରନ୍ତୁ, ମୁଁ ଯେଉଁଠାରେ ରହିଲେ ମଧ୍ୟ ଆପଣଙ୍କ ଆଶୀର୍ବାଦ ଲାଭ କରିବି।'' ଏକଲବ୍ୟ ଏତିକି କହି ଗୁରୁ ଦ୍ରୋଣଙ୍କୁ ପ୍ରଣାମ କରି ସେଠାରୁ ବିଦାୟ ନେଲା। ସେ ଆଉ ଘରକୁ ନଫେରି ଏକ ଘୋର ଅରଣ୍ୟରେ ପହଞ୍ଚିଲା। ସେଠାରେ ଗୁଡିଏ ମାଟି ଆଣି ଗୋଟିଏ ମଣ୍ଡପ କରି ଦ୍ରୋଣାଚାର୍ଯ୍ୟଙ୍କର ଅବିକଳ ମୂର୍ତ୍ତିଟିଏ ଗଠନ କରି ମଣ୍ଡପ ଉପରେ ବସାଇଲା। ପ୍ରତିଦିନ ମୂର୍ତ୍ତିକୁ ପ୍ରଣାମ କରି ତାଙ୍କରି ଆଗରେ ଏକଲବ୍ୟ ଧନୁର୍ବିଦ୍ୟା ଅଭ୍ୟାସ କଲା। କଥାରେ ଅଛି, 'କଷ୍ଟ କଲେ କୃଷ୍ଣପ୍ରାପ୍ତି ହୁଏ।' ଏକଲବ୍ୟର ଗୁରୁନିଷ୍ଠା ଓ ଦୃଢତା ଦେଖି ପରମ ଗୁରୁ ଭଗବାନ ତା' ପ୍ରତି ସନ୍ତୁଷ୍ଟ

ହେଲେ। ଈଶ୍ୱରଙ୍କ ଦୟାରୁ ସେ ମହା ଧନୁର୍ଦ୍ଧର ବୀର ହୋଇ ତା'ର ଲକ୍ଷ୍ୟସାଧନାରେ କୃତକାର୍ଯ୍ୟ ହେଲା।

ଥରେ ଦ୍ରୋଣାଚାର୍ଯ୍ୟ ଶିଷ୍ୟ ରାଜପୁତ୍ରମାନଙ୍କୁ ସଙ୍ଗରେ ନେଇ ଅସ୍ତ୍ରବିଦ୍ୟା ପରୀକ୍ଷା ଉଦ୍ଦେଶ୍ୟରେ ଗୋଟିଏ ଘୋର ଜଙ୍ଗଲରେ ପହଞ୍ଚିଲେ। ତାଙ୍କ ସାଙ୍ଗରେ ଗୋଟାଏ କୁକୁର ଥାଏ। ସେହି ଅରଣ୍ୟରେ ଏକଲବ୍ୟ ରହିଥାଏ। କୁକୁରଟି ବଣ ଭିତରେ ଏଣେତେଣେ ବୁଲିବାବେଳେ ଏକଲବ୍ୟ ଥିବା ସ୍ଥାନରେ ଯାଇ ପହଞ୍ଚିଲା। ତାକୁ ଦେଖି କୁକୁର ଖୁବ୍ ଜୋର ଭୁକିଲା। ଏକଲବ୍ୟର ଲକ୍ଷ୍ୟସାଧନାରେ ବ୍ୟାଘାତ ଘଟିବାରୁ ସେ କୁକୁର ପାଟିକୁ ଲକ୍ଷ୍ୟକରି ସାତଟି ଶର ମାରିଲା। ବୋତଲରେ ଶୋଲଠିପି ଦେବାପରି କୁକୁରର ପାଟି ବନ୍ଦ ହୋଇଗଲା। କୁକୁରଟି ଲାଙ୍ଗୁଳ ଜାକି ପଳାଇ ଆସିଲା ଏବଂ ଗୁରୁ ଦ୍ରୋଣ ଓ ରାଜପୁତ୍ରଙ୍କ ପାଖରେ ପହଞ୍ଚି ଅସ୍ତବ୍ୟସ୍ତ ହେଲା।

କୁକୁରଟିକୁ ଦେଖି ରାଜପୁତ୍ରମାନେ ଆଶ୍ଚର୍ଯ୍ୟ ହେଲେ। ଅର୍ଜୁନ ଦୁଃଖିତ ହୋଇ ଦ୍ରୋଣାଚାର୍ଯ୍ୟଙ୍କୁ କହିଲେ, "ଗୁରୁଦେବ! ଏ ଅରଣ୍ୟରେ ଏପରି ଶ୍ରେଷ୍ଠବୀର କିଏ ଅଛି ଯେ କୁକୁର ପାଟିରେ ଖଞ୍ଜିଦେବା ପରି ଶର ନିକ୍ଷେପ କରି ପାରୁଛି। ଅଥଚ କୁକୁରର ଦେହରେ କ୍ଷତ ହୋଇନି! ଆପଣ ମତେ ସର୍ବଶ୍ରେଷ୍ଠ ବୀର ବୋଲି ବିବେଚିତ କରନ୍ତି। କିନ୍ତୁ ଏହିପରି ଶର-ସନ୍ଧାନ କରିବାର କୌଶଳ ମୋତେ ଦିନେ ହେଲେ ଶିକ୍ଷା ଦେଇ ନାହାନ୍ତି! ତେଣୁ ସେହି ବୀରକୁ ମୁଁ ଦେଖିବାକୁ ଯିବି।" ଏହାକହି ଧନୁଶର ଧରି ଅର୍ଜୁନ ଯିବାକୁ ଉଦ୍ୟତ ହେବାରୁ ଗୁରୁ ଓ ସମସ୍ତ ରାଜପୁତ୍ର ତାଙ୍କ ସାଙ୍ଗରେ ଗଲେ।

ଦ୍ରୋଣାଚାର୍ଯ୍ୟ ଶିଷ୍ୟଙ୍କ ସହ ସେହି ବୀରକୁ ଖୋଜି ଖୋଜି ଏକଲବ୍ୟ ଥିବା ସ୍ଥାନରେ ଯାଇ ପହଞ୍ଚିଲେ। କୁକୁରଟି ତାଙ୍କ ସାଙ୍ଗରେ ଥାଏ। ସ୍ୱୟଂ ଗୁରୁଙ୍କୁ ଏକଲବ୍ୟ ଦେଖି ତାଙ୍କ ଚରଣ ତଳେ ପଡି ପ୍ରଣାମ କଲା। ତାକୁ ଦ୍ରୋଣ କହିଲେ, "ହେ ବାଳକ! ତୁ ଏପରି ଧନୁର୍ବିଦ୍ୟା କାହାଠାରୁ ଶିକ୍ଷାକଲୁ?" ଏକଲବ୍ୟ ହାତଯୋଡି କହିଲା, "ପ୍ରଭୋ! ମୁଁ ଆପଣଙ୍କ ଚରଣରେ ନିଜକୁ ସମର୍ପଣ କରିଛି। ଆପଣ ମତେ ଶିଷ୍ୟଭାବେ ଗ୍ରହଣ କରିବାକୁ ଅନିଚ୍ଛା ପ୍ରକାଶ କରିବାରୁ ଆପଣଙ୍କର ଏହି ମାଟି ମୂର୍ତ୍ତିକୁ ନିର୍ମାଣ କରି



ତାଙ୍କରି ଉପରେ ବିଶ୍ୱାସ ଓ ନିଷ୍ଠା ରଖି ଧନୁର୍ବିଦ୍ୟା ଶିକ୍ଷା କରୁଅଛି।'' ଏହା ଶୁଣି ଦ୍ରୋଣ କିଛି ସମୟ ନିରୁତ୍ତର ରହି କହିଲେ, ''ବତ୍ସ! ତୁ ଯଦି ମୋର ପ୍ରକୃତ ଶିଷ୍ୟ, ତେବେ ଗୁରୁଦକ୍ଷିଣା ଦେ।'' ଗୁରୁଙ୍କ କଥାଶୁଣି ଏକଲବ୍ୟ ଭାବିଲା- ମୋର ସାଧନା ଆଜି ସଫଳ ହେଲା। ମୁଁ ଧନ୍ୟ ହେଲି। ସେ ଗୁରୁଙ୍କୁ କହିଲା, ''ପ୍ରଭୋ! ମୋଠାରୁ କି ଗୁରୁଦକ୍ଷିଣା ନେଇ ଆପଣ ସନ୍ତୁଷ୍ଟ ହେବେ ଆଦେଶ ଦିଅନ୍ତୁ।'' ଦ୍ରୋଣାଚାର୍ଯ୍ୟ କହିଲେ, ''ଗୁରୁଦକ୍ଷିଣା ସ୍ୱରୂପ ତୋର ଡାହାଣ ହାତ ବୁଢ଼ାଆଙ୍ଗୁଳିଟି ମତେ ଦେ।''

ଏହା ଶୁଣି ଏକଲବ୍ୟ ସଙ୍ଗେ ସଙ୍ଗେ ଦୁଇଆଣ୍ଠୁ ମାଡି ବସିପଡିଲା ଓ ବାମହସ୍ତରେ ଧାରୁଆ ଶରଟିଏ ଧରି ଡାହାଣ ହାତର ବୁଢାଅଙ୍ଗୁଳିଟି କାଟି ଗୁରୁଙ୍କ ଚରଣରେ ଅର୍ପଣ କଲା। ଯୁଗେ ଯୁଗେ ଏକଲବ୍ୟର ଗୁରୁଭକ୍ତିର କୀର୍ତ୍ତି ରହିଲା। ■■

# ଗୁରୁଭକ୍ତ ଆରୁଣି

ବହୁତ ଦିନ ତଳର କଥା। ଧୌମ୍ୟ ନାମରେ ଜଣେ ଋଷି ଥିଲେ। ତାଙ୍କର ବହୁତ ଶିଷ୍ୟ ଥିଲେ। ସେ ତାଙ୍କ ଆଶ୍ରମରେ ଶିଷ୍ୟମାନଙ୍କୁ ବିଦ୍ୟା ଶିକ୍ଷା ଦେଉଥିଲେ। ଥରେ ଆରୁଣି ନାମକ ଜଣେ ବାଳକ ବିଦ୍ୟା ଶିକ୍ଷା କରିବାକୁ ଋଷିଙ୍କ ଆଶ୍ରମକୁ ଆସିଲା। ଋଷି ନୂଆ ଶିଷ୍ୟଙ୍କୁ ପରୀକ୍ଷା କରି ପରେ ବିଦ୍ୟାଶିକ୍ଷା ଦେଉଥିଲେ। ସେ ଆରୁଣିକୁ ପରୀକ୍ଷା କରିବାକୁ ଭାବି କହିଲେ, ''ବତ୍ସ! ପ୍ରବଳ ବର୍ଷା ହେଉଛି। ବର୍ଷା ହେବାରୁ ପାଣି କିଆରୀମାନଙ୍କରେ ପୂରି ଯାଇଛି। କିଆରୀରେ ପାଣି ଭର୍ତ୍ତି ହୋଇ ହିଡ ଭାଙ୍ଗି ସବୁ ପାଣି ବହି ଯାଉଛି। ପାଣି ବହିଗଲେ ଫସଲ ହେବ ନାହିଁ। ତୁମେ ଶୀଘ୍ର ଯାଇ ହିଡରେ ମାଟି ପକାଇ ବନ୍ଧାଇ ଦିଅ।''

ଆରୁଣି ଗୁରୁଙ୍କ ଆଦେଶ ଶୁଣିବା କ୍ଷଣି ଖୁବ୍ ଶୀଘ୍ର କିଆରୀ ପାଖକୁ ଚାଲିଗଲା। ସେ ଦେଖିଲା, ପାଣି ଖୁବ୍‌ଜୋର ବହିଯାଉଛି। ପାଣିର ସୁଅ ହିଡ ଦୁଇ କଡରୁ ମାଟି ଧୋଇ ନେଉଛି। ଏପରି ହେଲେ ବଡ ଘାଇ ହୋଇଯିବ। ଗୁରୁଦେବ କୋଡି କୋଦାଳ ଆଣିବାକୁ କହିନାହାନ୍ତି। ହିଡରେ ମାଟି ପକାଇ ବନ୍ଧାଇବ କିପରି? ଏତିକିବେଳେ ତାକୁ ଗୋଟିଏ ବୁଦ୍ଧି ଦେଖାଗଲା। ସେ ଘାଇ ମୁହଁରେ ଲମ୍ବହୋଇ ଶୋଇ ଯିବାରୁ ପାଣି ଅଟକିଗଲା। ମେଘପବନ ଘଡଘଡି ଅନବରତ ଲାଗି ରହିଛି। ତଳେ ପଙ୍କ କାଦୁଅରେ ଲଟପଟ ହୋଇ ଆରୁଣି ଶୋଇ ଭାବୁଥିଲା, 'ସନ୍ଧ୍ୟା ପୂର୍ବରୁ ଆଶ୍ରମକୁ ଫେରିଯିବା



କଥା। ଯଦି ମୁଁ ଘାଇ ମୁହଁରୁ ଉଠିବି, ପାଣି ଗଡି ଚାଲିଯିବ। ଶୀଘ୍ର ନଗଲେ ଗୁରୁଦେବ ରାଗିବେ।' ସେ କ'ଣ କରିବ ସ୍ଥିର କରିପାରିଲା ନାହିଁ। ଶେଷରେ ଗୁରୁଦେବଙ୍କୁ ସ୍ମରଣ କରି ସେଠାରେ ଶୋଇ ରହିଲା।

ସନ୍ଧ୍ୟା ହେବାରୁ ଆଶ୍ରମର ଶିଷ୍ୟମାନେ ଏକତ୍ରିତ ହୋଇ ବେଦ-ଗାନ କରିବାକୁ ଗୁରୁଙ୍କ ନିକଟକୁ ଗଲେ। ଗୁରୁ ଆରୁଣିକୁ ପଠାଇ ଦେଇ ତା' ବିଷୟ ଭୁଲି ଯାଇଥିଲେ। ସେ ଶିଷ୍ୟମାନଙ୍କୁ ଦେଖି ପଚାରିଲେ, ''ସମସ୍ତେ ତ ଆସିଲ; ଆରୁଣି କାହିଁ?''

ଶିଷ୍ୟମାନେ ଗୁରୁଙ୍କୁ କହିଲେ, ''ଆପଣ ତାକୁ ସକାଳୁ କିଆରୀର ହିତ ବନ୍ଧାଇବାକୁ ପଠାଇଛନ୍ତି! ସେ ଫେରିନାହିଁ।''

ଋଷି ଏସବୁ ଶୁଣି ବ୍ୟସ୍ତ ହୋଇ ପଡିଲେ। ପିଲାଟା ସକାଳୁ କିଛି ଖାଇନାହିଁ।

ଆସି ରାତି ହେଲା। ବଣ ଜଙ୍ଗଲ ସ୍ଥାନ। ଚାରିଆଡୁ ଅନ୍ଧାର ମାଡି ଆସୁଛି। ଆରୁଣି କେଉଁଠାରେ ଅଛି କିଛି ଜାଣି ହେଉନାହିଁ। ଗୁରୁ ଶିଷ୍ୟମାନଙ୍କୁ ସାଙ୍ଗରେ ନେଇ ଆରୁଣିକୁ ଖୋଜିବାକୁ ବାହାରିଲେ।

ଗୁରୁଦେବ 'ଆରୁଣି', 'ଆରୁଣି' ଉଚ୍ଚ ସ୍ୱରରେ ଡାକି ବହୁତ ଖୋଜିଲେ। କିନ୍ତୁ କେଉଁଠି ପାଇଲେ ନାହିଁ। ଯେଉଁ କିଆରୀକୁ ହିଡ ବନ୍ଧାଇବାକୁ ପଠାଇଥିଲେ ସେଠାରେ ଯାଇ ପହଞ୍ଚି ଆରୁଣିକୁ ଡାକିଲେ। ଗୁରୁଦେବଙ୍କ ଡାକ ଶୁଣି ଆରୁଣି ଜବାବ ଦେଲା, ''ମୁଁ କିଆରୀ ପାଖରେ ଅଛି।''

ସମସ୍ତେ ସେଠାକୁ ଯାଇ ଦେଖିଲେ, ଆରୁଣି ନିଜେ ବନ୍ଧ ହୋଇ ଶୋଇରହି ପାଣି ବନ୍ଦ କରାଇଛି। ତାକୁ ଚିହ୍ନି ହେଉନାହିଁ। ତା' ଶରୀରରେ ପଙ୍କ କାଦୁଅ ଲେପି ହୋଇଯାଇଛି। ଆରୁଣିକୁ ଏପରି ଦେଖି ଗୁରୁଙ୍କର ବିସ୍ମୟର ସୀମା ରହିଲା ନାହିଁ। ସମସ୍ତେ ତାକୁ ଧୁଆଧୋଇ କରିଦେଲେ। ତା'ର ଦେହ ଶେତା ପଡି ଥଣ୍ଡାହୋଇ ରହିଥିଲା ଏବଂ ସେ ଥରୁଥିଲା। ସେ ଗୁରୁଙ୍କ ପାଦତଳେ ପ୍ରଣାମ କଲା। ଗୁରୁ ଆରୁଣିର ମୁଣ୍ଡରେ ହାତରଖି କହିଲେ, ''ବତ୍ସ! ତୁମେ ହିଡ ବନ୍ଧାଇବାକୁ ଜୀବନକୁ ବିପଦଗ୍ରସ୍ତ କରି ଏତେ କଷ୍ଟ ସହିଲ ?''

ଆରୁଣି ହାତଯୋଡି ଗୁରୁଙ୍କୁ କହିଲା, ''ଗୁରୁଦେବ! ଦେଖିଲି, ପାଣି ଖୁବ୍ ଜୋରରେ ଗଡି ଯାଉଛି। ମୁଁ ବହୁ ଚେଷ୍ଟାକରି ପାଣି ସୁଅ ବନ୍ଦ ନହେବାରୁ ଅନ୍ୟ ଉପାୟ ନପାଇ ନିଜେ ଶୋଇ ପାଣି ବନ୍ଦ କରାଇଥିଲି।''

ଗୁରୁଦେବ ଆରୁଣିର ଅସାଧାରଣ ଗୁରୁଭକ୍ତି ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ କହିଲେ, ''ଆରୁଣି! ତୁମର ପରୀକ୍ଷା ସରିଗଲା। ତୁମେ ମୋର ପ୍ରିୟ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ ଶିଷ୍ୟ ହେଲ। ଆଜିଠାରୁ ମୁଁ ତୁମକୁ 'ଉଦ୍ଦାଳକ' ନାମ ଦେଲି। ତୁମେ ସବୁ ବିଦ୍ୟାରେ ସୁଜ୍ଞାନ ଲାଭ କର।''

ଏହା ପରେ ଆରୁଣି ଆଶ୍ରମରେ ରହିଲା ଏବଂ ଗୁରୁଙ୍କ ଆଶୀର୍ବାଦରୁ ଯଥା ସମୟରେ ସର୍ବ ଶାସ୍ତ୍ରରେ ପଣ୍ଡିତ ହେଲା। 

# ଶିବି ରାଜା

ସତ୍ୟଯୁଗର କଥା। ଶିବି ନାମରେ ଜଣେ ପୁଣ୍ୟବନ୍ତ ରାଜା ଥିଲେ। ବହୁତ ଧନରତ୍ନରେ ତାଙ୍କର ଭଣ୍ଡାର ଭରପୂର ହୋଇଥିଲା। ସେ ପ୍ରତିଦିନ ଦରିଦ୍ର ବ୍ୟକ୍ତିମାନଙ୍କୁ ବହୁତ ଧନ ଦାନ ଦେଉଥିଲେ। ତାଙ୍କର ଏହି ପୁଣ୍ୟକର୍ମ ସ୍ୱର୍ଗ ଓ ମର୍ତ୍ତ୍ୟରେ ପ୍ରଚାର ହେବାକୁ ଲାଗିଲା। ରାଜାଙ୍କ ଦାନ ଧର୍ମ ପ୍ରଭାବରେ ସ୍ୱର୍ଗର ଦେବତାମାନେ ଖୁବ୍ ସନ୍ତୁଷ୍ଟ ହେଲେ। ଥରେ ଦେବତାମାନେ ସ୍ଥିରକଲେ, ଶିବିରାଜାଙ୍କର ଧର୍ମ ପରୀକ୍ଷା କରିବେ।

ସେମାନେ ନିଜ ଭିତରେ ଆଲୋଚନା କରି ସ୍ଥିରକଲେ, ଅଗ୍ନିଦେବତା ଗୋଟିଏ କପୋତ ରୂପ ଧାରଣ କରିବେ। ଇନ୍ଦ୍ର ଗୋଟିଏ ଛଞ୍ଚାଣ ରୂପ ହୋଇ କପୋତକୁ ଭକ୍ଷଣ କରିବାକୁ ତା' ପଛରେ ଗୋଡାଇବେ। ତାହାହିଁ ହେଲା। ଅଗ୍ନି କପୋତ-ପକ୍ଷୀ ହୋଇ ଉଡି ଧାଇଁଲେ। ଇନ୍ଦ୍ର ଛଞ୍ଚାଣ ହୋଇ କପୋତକୁ ଦ୍ରୁତ ବେଗରେ ତା' ପଛରେ ଗୋଡାଇଲେ। କପୋତ ଜୀବନ ବିକଳରେ ଉଡିଆସି ଶିବିରାଜାଙ୍କ କୋଳରେ ପଡିଗଲା। କପୋତ ରାଜାଙ୍କୁ କହିଲା, "ହେ ରାଜା! ମୁଁ ବର୍ତ୍ତମାନ ଆପଣଙ୍କର ଶରଣାଗତ ହେଲି। ମତେ ଛଞ୍ଚାଣ ଭୟରୁ ରକ୍ଷା କରି ମୋ ଜୀବନ ବଞ୍ଚାନ୍ତୁ!" ରାଜା କପୋତର ଏପରି ବିକଳ କଥା ଶୁଣି ତାକୁ ସାହସ ଦେଇ କହିଲେ, "ହେ କପୋତ! ଏଥର ତୁମେ ନିର୍ଭୟରେ ରୁହ। ଛଞ୍ଚାଣ ତୁମର କିଛି ଅନିଷ୍ଟ କରି ପାରିବ ନାହିଁ।"

ରାଜାଙ୍କ କଥା ନ ସରୁଣୁ ଛଞ୍ଚାଣ ଦ୍ରୁତଗତିରେ ଆସି ରାଜାଙ୍କ ପାଖରେ ପହଞ୍ଚିଯାଇ



କହିଲା, ‘‘ମହାରାଜ ! ଏ କପୋତ ମୋର ଖାଦ୍ୟ । ଆପଣ ତାକୁ ଦେଇଦିଅନ୍ତୁ । ମୁଁ ଆଜି ଏହାକୁ ଖାଇ ମୋର କ୍ଷୁଧା ନିବାରଣ କରିବି ।’’ ଛଞ୍ଚାଣ କଥା ଶୁଣି ରାଜା ତାଙ୍କୁ କହିଲେ, ‘‘କପୋତ ଆଜି ମୋର ଶରଣାପ୍ରାର୍ଥୀ । ମୁଁ ତା’ର ଜୀବନ ରକ୍ଷା କରିବି । ତୁମକୁ କଦାପି ଦେବିନାହିଁ ।’’

ଛଞ୍ଚାଣ କହିଲା, ‘‘ଆପଣ ପରା ଜଣେ ଧର୍ମବୀର ! ମୋ ଆହାର ମୁଖରେ ବାଧା ଦେଇ ଏପରି ପାପ ଅର୍ଜନ କରୁଛନ୍ତି ? ଭୋକରେ ମୋ ପେଟ ଜଳିଯାଉଛି । ଶୀଘ୍ର କପୋତକୁ ଦେଇଦିଅନ୍ତୁ ।’’

ରାଜା କହିଲେ, ‘‘ହେ ଛଞ୍ଚାଣ ! ଯାହାର ଜୀବନ ବିପନ୍ନ, ସେପରି ପ୍ରାଣୀକୁ ଶତ୍ରୁହାତରେ ଦେଲେ ସକଳ ପୁଣ୍ୟ ମୁହୂର୍ତ୍ତକ ମଧ୍ୟରେ ନଷ୍ଟ ହେବ । ତେଣୁ ଏହି କପୋତକୁ ମୁଁ ଦେବିନାହିଁ । ଏହି କପୋତ ପରିବର୍ତ୍ତେ ତୁମେ ଯେଉଁ ପ୍ରକାର ଓ ଯେତେ ଖାଦ୍ୟ

ଚାହିଁବ ମୁଁ ଦେଇ ପାରିବି।'' ରାଜାଙ୍କ କଥା ଶୁଣି ଛଞ୍ଚାଣ କହିଲା, ''ହେ ରାଜନ୍! ମୋର ଅନ୍ୟ ଖାଦ୍ୟ ଲୋଡା ନାହିଁ। ଆଜି ବିଧାତା ଖାଦ୍ୟ ରୂପେ ଏହି କପୋତକୁ ମୋ ପାଇଁ ଖଞ୍ଜି ଦେଇଛନ୍ତି।''

ରାଜା ଛଞ୍ଚାଣକୁ ବୁଝାଇବାକୁ ଚେଷ୍ଟା କଲେ। ସେ କହିଲେ, ''ଦେଖ, ଶରଣାଗତକୁ ରକ୍ଷା କରିବା ରାଜାର ଶ୍ରେଷ୍ଠଧର୍ମ। ଏହି କପୋତ ଛଡା ତୁମେ ରାଜ୍ୟ, ଧନ, ପ୍ରାଣ ଯାହା ମାଗିବ ତାହା ଦେବି; ମାତ୍ର ଏ କପୋତଟିକୁ ଦେବିନାହିଁ।'' ରାଜାଙ୍କ କଥାଶୁଣି ଛଞ୍ଚାଣ କହିଲା, ''ତେବେ କପୋତ ଓଜନର ମାଂସ ତୁମ ଦେହରୁ କାଟି ମତେ ଦିଅ।'' ଛଞ୍ଚାଣ କଥାଶୁଣି ଶିବିରାଜା ଖୁସିରେ ସମ୍ମତି ପ୍ରକାଶ କଲେ। ତରାଜୁ ମଗାଇ ଗୋଟିଏ ପାଖରେ କପୋତକୁ ରଖି, ଅନ୍ୟ ପାଖରେ ନିଜ ଦେହର ମାଂସକୁ କାଟି ପକାଇଲେ। ଓଜନ କରିବାରୁ କପୋତ ଭାରି ହେଲା। ପୁଣି ରାଜା ମାଂସ କାଟି ତରାଜୁରେ ଚଢାଇଲେ। ତଥାପି କପୋତ ଓଜନରେ ବେଶୀ ହେଲା। ଏହିପରି ରାଜା ତାଙ୍କ ଶରୀରର ସମସ୍ତ ମାଂସ କାଟି ପକାଇଲେ। ତଥାପି କପୋତ ଓଜନରେ ବହୁତ ହେଲା। ଶେଷରେ ରାଜା ନିଜେ ତରାଜୁରେ ବସି ପଡିଲେ।

ରାଜାଙ୍କର ଏପରି ଆଚରଣ ଦେଖି ଦେବତାମାନେ ଆଶ୍ଚର୍ଯ୍ୟ ହେଲେ। ସ୍ୱର୍ଗରୁ ରାଜାଙ୍କ ମସ୍ତକରେ ପୁଷ୍ପବୃଷ୍ଟି ହେଲା। ଏଥର ଛଞ୍ଚାଣ ଇନ୍ଦ୍ର ରୂପ ଧାରଣ କରି ରାଜାଙ୍କୁ କହିଲେ, ''ହେ ମହାତ୍ମା! ମୁଁ ଇନ୍ଦ୍ର। ଯେଉଁ କପୋତ ତରାଜୁରେ ଓଜନ ହେଉଛନ୍ତି ସେ ଅଗ୍ନି ଦେବତା। ତୁମ ଧର୍ମ ପରୀକ୍ଷା କରିବା ପାଇଁ ଦେବତାମାନେ ଆମ ଦୁଇଜଣଙ୍କୁ ଛଦ୍ମବେଶରେ ଏଠାକୁ ପଠାଇଛନ୍ତି। ଅନ୍ୟର ଜୀବନ ରକ୍ଷା ପାଇଁ ତୁମେ ଆଜି ଯେଉଁ ମହାନ୍ ଦୃଷ୍ଟାନ୍ତ ଦେଖାଇଲ, ପୂର୍ବରୁ ମର୍ତ୍ତ୍ୟରେ ଅନ୍ୟ କୌଣସି ରାଜା ତାହା କରିନାହାନ୍ତି। ମୁଁ ତୁମକୁ ବର ଦେଉଛି, ତୁମ ଦେହ ପୂର୍ବାପେକ୍ଷା ଆହୁରି ସୁନ୍ଦର ହେଉ। ତୁମେ ଦୀର୍ଘଜୀବନ ଲାଭକରି ପରୋପକାର ବ୍ରତରେ ପୃଥିବୀ ପାଳନ କର।''

ରାଜାଙ୍କୁ ଆଶୀର୍ବାଦ କରି ଇନ୍ଦ୍ର ଓ ଅଗ୍ନି ଦେବତା ଦୁହେଁ ସେଠାରୁ ଅନ୍ତର୍ହିତ ହେଲେ।



# ଭକ୍ତ ବାଳକ ନଚିକେତା

ବାଜଶ୍ରବା ନାମରେ ଜଣେ ଋଷି ଥିଲେ। ସେ ପୁଣ୍ୟ ଅର୍ଜନ କରିବା ପାଇଁ ପ୍ରତିଦିନ ଗୋ-ଦାନ ଦେଉଥିଲେ। ଋଷିଙ୍କର ଗୋଟିଏ ପୁଅ ଥିଲା। ତା'ର ନାମ ନଚିକେତା। ପିଲାଟି ବିଦ୍ୟା ବୁଦ୍ଧିରେ ପ୍ରଖର। ଋଷି ପ୍ରତିଦିନ ବୁଢୀ ଗାଈଗୁଡିଏ ବ୍ରାହ୍ମଣଙ୍କୁ ଦାନ ଦିଅନ୍ତି। ଏସବୁ ଦେଖି ନଚିକେତା ମନରେ ବହୁତ କଷ୍ଟ ହୁଏ। ବାପାଙ୍କର ଏପରି ଅନ୍ୟାୟ କାର୍ଯ୍ୟ ସେ ସହିପାରେ ନାହିଁ।

ନଚିକେତା ଛୋଟ ପିଲା ହେଲେ ମଧ୍ୟ ତା'ର ବୁଝିବା ଶକ୍ତି ବହୁତ। ସେ ଭାବେ, ବାପା ବ୍ରାହ୍ମଣମାନଙ୍କୁ ବୁଢୀ ଗାଈ ଦାନ ଦେଇ ଠକାଇ ଦେଉଛନ୍ତି। ଏହିପରି ଅପକର୍ମ କରିବା ଦ୍ୱାରା ସେ ପୁଣ୍ୟ ପରିବର୍ତ୍ତେ ପାପ ଅର୍ଜନ କରୁଛନ୍ତି। ତାଙ୍କର ସୁଫଳ ନାହିଁ କି ବ୍ରାହ୍ମଣମାନଙ୍କର ଲାଭ ନାହିଁ। ଗାଈଗୁଡିକ ଅଳ୍ପଦିନ ବଞ୍ଚିବେ। ଯେଉଁମାନେ ଦାନ ନେଉଛନ୍ତି ମାତ୍ର କିଛିଦିନ ତାଙ୍କୁ ପାଳନ କରିବା ସାର ହେବ।

ନଚିକେତା ଭାବିଲା, ଏପରି ଦାନ ନ ଦେବାକୁ ସେ ବାପାଙ୍କୁ କହିବ। ହେଲେ କହିବାକୁ ତା'ର ସାହସ ହେଉ ନଥାଏ। ଶେଷରେ ମନର ଦୁଃଖ ଓ ଭୟକୁ ଚାପିରଖି ସାହସ ବାନ୍ଧିଲା। ବାପାଙ୍କ ପାଖକୁ ଯାଇ ହାତଯୋଡି ବିନୀତ ଭାବେ କହିଲା, "ବାପା! ତୁମେ ବହୁତ ଦାନ ଦେଉଛ, ମୋତେ କାହାକୁ ଦାନ ଦେବ?"

ପୁଅଠାରୁ ଏପରି କଥା ଶୁଣି ଋଷି ବହୁତ ରାଗିଗଲେ ଓ ଉତ୍ତରରେ କହିଲେ,



"ତୋତେ ଯମକୁ ଦେବି।"

ଋଷି ପୁଅକୁ ଅଭିଶାପ ଦେଇ ପାଗଳ ପରି ହୋଇଗଲେ। ତାଙ୍କର ରାଗ ଏକାଥରକେ ଶାନ୍ତ ହୋଇଗଲା। ସେ ଅନୁତାପ କରିବାକୁ ଲାଗିଲେ। 'ଛୋଟ ପିଲାଟା କଥାରେ ମୁଁ କ୍ରୋଧାନ୍ଧ ହୋଇ କି ଅନ୍ୟାୟ କଲି! ନିଜର ପିଲାକୁ ଶାପ ଦେଇ ବ୍ରହ୍ମଶାପଗ୍ରସ୍ତ କରାଇଲି। ତପସ୍ୱୀ ସମାଜରେ ନିନ୍ଦିତ ହେଲି। ଦୁନିଆରେ ମୋର ଅପଯଶ ଯୁଗ ଯୁଗ ପାଇଁ ରହିଗଲା!' ଏହିପରି ବ୍ୟସ୍ତ ହୋଇ କାନ୍ଦିବାକୁ ଲାଗିଲେ।

କଥାରେ ଅଛି, ଋଷିବାକ୍ୟ ଅନ୍ୟଥା ହୁଏ ନାହିଁ। କହିଦେବା କଥା ଓ ବହିଯିବା ପାଣି ଆଉ ଲେଉଟି ଆସେ ନାହିଁ। ଏପରି ନିରୁପାୟ ଅବସ୍ଥାରେ ଆଉ ଉପାୟ କ'ଣ ବା ଅଛି?

ନଚିକେତା ପିତାଙ୍କ ସତ୍ୟ ନିଷ୍ଠୟ ରକ୍ଷା କରିବ ଭାବି ଯମପୁରକୁ ଯିବାକୁ ବାହାରିଲା । ସେ ବାପାଙ୍କ ପାଖକୁ ଯାଇ ପାଦତଳେ ପ୍ରଣାମ କରି କହିଲା, "ମୁଁ ଯମପୁରକୁ ଯାଉଛି ।" ଋଷି ପୁଅର ମୁଣ୍ଡକୁ ଆଉଁସି କାନ୍ଦିବାକୁ ଲାଗିଲେ । ନଚିକେତା କହିଲା, "ବାପା ! ତୁମେ ମନଦୁଃଖ କରନାହିଁ । ଈଶ୍ୱର ଯାହା କରନ୍ତି ମଙ୍ଗଳ ପାଇଁ ।" ନଚିକେତା କୌଣସି କଥାରେ ବିଚଳିତ ନହୋଇ ସେଠାରୁ ଯମପୁରକୁ ଗଲା ।

ନଚିକେତା ଯମରାଜାଙ୍କ ଦ୍ୱାରରେ ପହଞ୍ଚି ଜାଣିଲା ଯେ ସେ ନାହାନ୍ତି, କେଉଁଆଡେ ଯାଇଛନ୍ତି । ସେ ଯମଙ୍କ ଦ୍ୱାରରେ ଅପେକ୍ଷାରେ ରହି କିଛି ନଖାଇ ନ ପିଇ ପଦ୍ମାସନରେ ଆଖିବୁଜି ବସି ଏକ ଲୟରେ ଯମରାଜାଙ୍କୁ ଧ୍ୟାନ କଲା । ଏହିପରି ତିନିଦିନ ତିନିରାତି କଟିଲା । ତା' ଅନ୍ତରର ଡାକ ଠିକ୍ ଯାଇ ଯମରାଜାଙ୍କ ପାଖରେ ପହଞ୍ଚିଗଲା ।

ଧର୍ମରାଜ ଯମ ଜାଣିପାରିଲେ ତାଙ୍କୁ କିଏ ସ୍ମରଣ କରୁଛି, ସେ ଆଉ ରହିପାରିଲେ ନାହିଁ । ଶୀଘ୍ର ଫେରି ଆସିଲେ । ଦେଖିଲେ, ନଚିକେତା ତିନିଦିନ ହେଲା ଉପବାସରେ ତାଙ୍କ ଦ୍ୱାରରେ ବସି ଧ୍ୟାନ କରୁଛି । ଛୋଟ ପିଲାଟିର ଏପରି ନିଷ୍ଠା ଦେଖି ତାଙ୍କ ମନରେ ବହୁତ ଦୁଃଖ ହେଲା । ସେ ବାଳକଟି ପ୍ରତି ବହୁତ ଖୁସି ହୋଇ କହିଲେ, "ହେ ଋଷିପୁତ୍ର ! ମୁଁ ସ୍ୱୟଂ ଯମରାଜା । ତୁମେ ତିନିଦିନ ଉପବାସରେ ରହି ମୋତେ ଧ୍ୟାନ କରିଛ । ମୁଁ ତୁମପ୍ରତି ବହୁତ ସନ୍ତୁଷ୍ଟ ହୋଇ ତୁମକୁ ତିନୋଟି ବର ଦେଉଛି, ତାହା ତୁମେ ମାଗିନିଅ ।"

ନଚିକେତା ଯମରାଜାଙ୍କ ଚରଣରେ ପ୍ରଣାମ କରି ହାତଯୋଡି କହିଲା, "ପ୍ରଭୋ ! ମୋ ବାପାଙ୍କୁ କ୍ରୋଧ, ମୋହ ଓ ଲୋଭରୁ ମୁକ୍ତ କରନ୍ତୁ । ଦ୍ୱିତୀୟରେ ମୋତେ ପବିତ୍ର ସଦ୍‌ଜ୍ଞାନ ଦିଅନ୍ତୁ, ଯାହାଦ୍ୱାରା ମୁଁ ଅମୃତମୟ ସ୍ୱର୍ଗରାଜ୍ୟକୁ ଯାଇପାରିବି । ସେଠାରେ ରହି ଜରା-ବ୍ୟାଧି, ଭୋକ-ଶୋଷ ଓ ମୃତ୍ୟୁଯନ୍ତ୍ରଣା ଭୋଗିବି ନାହିଁ ।" ଯମରାଜ ସେହିକ୍ଷଣି ହାତଟେକି ଦୁଇଟି ବର ପ୍ରଦାନ କଲେ ।

ନଚିକେତା ତୃତୀୟ ବର ମାଗିଲା, "ହେ ଧର୍ମରାଜ ! ପ୍ରାଣୀମାନେ ମରିଯିବା ପରେ ତାଙ୍କର କିପରି ଅବସ୍ଥା ହୁଏ, ଦୟାକରି ମୋତେ ବୁଝାଇ ଦିଅନ୍ତୁ ।" ଯମରାଜ ନଚିକେତାର

ତୃତୀୟ ପ୍ରଶ୍ନଟି ଶୁଣି ବଡ ଅଡୁଆରେ ପଡିଗଲେ। ସେ କହିଲେ, "ହେ ବାଳକ! ଏ ମୃତ୍ୟୁର ରହସ୍ୟ ବଡ ଗୋପନ କଥା। କୌଣସି ପୃଥିବୀବାସୀ ଏହା ଜାଣି ନାହାନ୍ତି କି ଜାଣିବେ ନାହିଁ ମଧ୍ୟ। ତେଣୁ ତୁମେ ଏହି ବର ମାଗିବା ପରିତ୍ୟାଗ କର। ଏହା ବ୍ୟତୀତ ଧନ-ଦ୍ରବ୍ୟ, ମଣି-ମାଣିକ୍ୟ ତୁମର ଯେତେ ଇଚ୍ଛା ମାଗିବ ମାଗ। ମୁଁ ଅକୁଣ୍ଠିତ ଚିତ୍ତରେ ସବୁ ଦେବି।" ନଚିକେତା ନିଜ କଥାରୁ ଟିକିଏ ହେଲେ ଟଳିଲା ନାହିଁ। ସେ ଯମରାଜାଙ୍କୁ କହିଲା, "ପ୍ରଭୋ! ଆପଣ ହେଉଛନ୍ତି ମୃତ୍ୟୁ-ଦେବତା । ମୃତ୍ୟୁର ରହସ୍ୟ ଆପଣ ହିଁ ଜାଣନ୍ତି। ଆପଣ ଦୟାକରି ତାହା ମୋତେ କହନ୍ତୁ। ମୋର ଧନ-ସମ୍ପଦ କିଛି ଲୋଡାନାହିଁ।"

ଯମରାଜା ଦେଖିଲେ ଋଷିପୁତ୍ର ନିଜ କଥାରେ ଅଟଳ। ତାକୁ କୌଣସି ପ୍ରକାର ଭୁଲାଇ ହେଉ ନାହିଁ। ସେ ଆଉ କୌଣସି ଉପାୟ ସ୍ଥିର କରିପାରିଲେ ନାହିଁ। ଏଥର ମୃତ୍ୟୁପରେ ପ୍ରାଣୀର କ'ଣ ଘଟେ ସବୁ କହିଦେଲେ। ଋଷିପୁତ୍ର ନଚିକେତାର ଏହି ଅମରକୀର୍ତ୍ତି ଯୁଗ ଯୁଗ ଧରି ରହିଅଛି।



# ଶିବରାତ୍ରି ଓ ଶବର

ଅନେକ ବର୍ଷ ତଳର କଥା । ଫାଲ୍‌ଗୁନ କୃଷ୍ଣପକ୍ଷ ଚତୁର୍ଦ୍ଦଶୀକୁ ଶିବ-ଚତୁର୍ଦ୍ଦଶୀ କୁହାଯାଏ । ସେ ଦିନ ଶିବଭକ୍ତମାନେ ନିର୍ଜ୍ଜଳ ଉପବାସ କରନ୍ତି । ସେହି ମହାଶିବରାତ୍ରି ଜାଗର ଦିନ ଶିବଉପାସକମାନେ ଧୂପ, ଦୀପ, ଫୁଲ ଓ ଭୋଗ ସହ ଶିବମନ୍ଦିରକୁ ଯାଆନ୍ତି । ଦର୍ଶନ ସାରି ପୂଜା ଆରାଧନାରେ ବ୍ୟସ୍ତ ରହନ୍ତି । ସନ୍ଧ୍ୟାବେଳଠାରୁ ସାରା ରାତି ଅନିଦ୍ରା ରହି ମହାଦେବଙ୍କ ସମ୍ମୁଖରେ ଦୀପ ଜାଳନ୍ତି । ମନ୍ଦିର ମଧ୍ୟରେ ଏକ ବଡ ଦୀପ ଜଳୁଥାଏ । କୌଣସି ଭକ୍ତର ଦୀପ ଜାଳିବା ସୁବିଧା ନଥିଲେ ସାଙ୍ଗରେ ଆଣିଥିବା ଘିଅ ସେହି ବଡ ଦୀପରେ ଢାଳି ଦିଅନ୍ତି । ପ୍ରବାଦ ଅଛି, ଏହି ଦିନ ନିର୍ଜ୍ଜଳ ଉପବାସ ରହି ମହାଦେବଙ୍କୁ ଦୀପ ଦାନକଲେ ଶିବ ଖୁବ୍ ସନ୍ତୁଷ୍ଟ ହୁଅନ୍ତି । ଏହାଦ୍ଵାରା ଅଶେଷ ପୁଣ୍ୟ ଅର୍ଜ୍ଜନ କରାହୁଏ ।

ପୂର୍ବକଥିତ ବୃହତ୍ ଘୃତ ଦୀପଟି ମନ୍ଦିର ଉପରକୁ ନିଆଯାଏ । ଏହାକୁ ମହାଦୀପ କୁହାଯାଏ । ଏହି ଦୀପ ଉପରକୁ ଉଠିବାବେଳେ ଶଙ୍ଖ, ଘଣ୍ଟ, ବାଦ୍ୟ, ହରିବୋଲ ଓ ହୁଳହୁଳି ଧ୍ଵନିରେ ମନ୍ଦିର ମୁଖରିତ ହୋଇଉଠେ । ଭକ୍ତମାନେ ତାହା ଦର୍ଶନ କରି ନିଜକୁ କୃତାର୍ଥ ମଣନ୍ତି । ଆମ ଦେଶର ସବୁ ଅଞ୍ଚଳରେ ହିନ୍ଦୁମାନେ ଏହି ଦିନ ମହାଦେବଙ୍କୁ ଭକ୍ତିଭରେ ପୂଜା କରନ୍ତି । କାଶୀ, ଭୁବନେଶ୍ଵର ଓ ଅନେକ ଶୈବକ୍ଷେତ୍ରରେ ଏହି ଉତ୍ସବ ଅତି ଆଡମ୍ବର ସହିତ ପାଳିତ ହୁଏ ।

ଗୋଟିଏ ଶବର ଥିଲା । ସେ ଜୀବହତ୍ୟା କରି ପେଟ ପୋଷେ । ସାରା ଜୀବନ



ଅଗଣିତ ପଶୁ, ପକ୍ଷୀ ବଧ କରିବା ତା'ର ଥିଲା ଜୀବିକା। ଅଜ୍ଞାନରେ ସେ ଏପରି ମହାପାପ ଅର୍ଜନ କରିବାରେ ଲାଗିଥାଏ।

ସବୁ ଦିନ ପରି ଶିବଚତୁର୍ଦ୍ଦଶୀ ଦିନ ମଧ ଶବର ତା'ର ଧନୁଶର ଧରି ଶିକାର କରିବାକୁ ଗଲା। ସାରାଦିନ ଜଙ୍ଗଲରେ ବୁଲି ବୁଲି କୌଣସି ଶିକାର ପାଇଲା ନାହିଁ। ସେ ଦିନଟି ତା'ର ଉପବାସରେ କଟିବ, ସେଥିପାଇଁ ଶବର ମନରେ ବହୁତ କଷ୍ଟ ହେଲା। ସେତେବେଳକୁ ସନ୍ଧ୍ୟା ହୋଇଯାଇଥାଏ। କିଛିକ୍ଷଣ ପରେ ରାସ୍ତାଘାଟ ଆଉ ଦେଖାଗଲା ନାହିଁ, ତେଣୁ ଶବର ତା'ଘରକୁ ଫେରିଯାଇ ପାରିଲା ନାହିଁ।

ଶୀତ ଦିନ। ଶବର ଗୋଟିଏ ଗଛ ଉପରେ ବସି ରାତିଟି କଟାଇବାକୁ ସ୍ଥିର

କଲା । ଶୀତ କଷ୍ଟରୁ ରକ୍ଷା ପାଇବା ପାଇଁ ଶୁଖିଲା କାଠ ଗୁଡିଏ ଗୋଟାଇ ଆଣି ଗୋଟିଏ ଝଙ୍କାଳିଆ ଗଛ ତଳେ ଜଳାଇ ଦେଲା ଓ ସେହି ଗଛ ଉପରେ ବସି ରହିଲା । କାଠଗଡଗୁଡିକ ଅନବରତ ଜଳୁଥିବାରୁ ଗଛତଳ ଆଲୋକିତ ହେଲା ଓ ଶବରକୁ ଉଷୁମ ଲାଗିଲା ।

ଶବରଟି ଯେଉଁ ଗଛରେ ବସି ଥିଲା ତାହା ଗୋଟିଏ ବେଲଗଛ । ସେହି ଗଛମୂଳେ ଗୋଟିଏ ଶିବଲିଙ୍ଗ ଥିଲେ । ଉପରେ ମଣିଷ ବସିବାରୁ ଗଛଟି ହଲିଲା । ସଙ୍ଗେ ସଙ୍ଗେ ବେଲପତ୍ରଗୁଡିକ ସେହି ଶିବଲିଙ୍ଗ ଉପରେ ଗଦା ହେଲା । ପତ୍ରଗୁଡିକରେ କାକର ବିନ୍ଦୁ ପଡି ପାଣି ବହିଲା । ଶିବଲିଙ୍ଗ ମସ୍ତକ ଉପରେ ବେଲପତ୍ର ଓ ଜଳ ଲାଗି ରହିଲା ।

ଶବରଟି ଦିନସାରା ଉପବାସ ରହିଥିଲା । ରାତିସାରା ଅନିଦ୍ରା ରହି ଶୀତ କଷ୍ଟରେ ଆଲୁଅ ଜାଳିଲା । ଶବର ଅଜ୍ଞାତରେ ମହା-ଶିବରାତ୍ରି ଓଷାବ୍ରତ ପାଳନ କଲା । ଶବରର ଜାଗର-ବ୍ରତ ପାଳନ ଦେଖି ମହାଦେବ ବହୁତ ସନ୍ତୁଷ୍ଟ ହେଲେ । କିନ୍ତୁ ଶବରକୁ ଏସବୁ କଥା ଜଣା ନଥିଲା । ରାତିପାହି ସକାଳ ହେଲା । ସେ ଗଛରୁ ଓହ୍ଲାଇ ତା’ ଘରକୁ ଗଲା । ପୁଣି ପରଦିନଠାରୁ ଶିକାର କରି ଜୀବବଧ କରିବାରେ ଲାଗିଲା ।

ଏହିପରି ଅନେକ ଦିନ ବିତିଯିବା ପରେ ସେହି ଶବରଟି ବୁଢା ହୋଇ ମରିଗଲା ।

ତା’ର ମୃତ୍ୟୁ ପରେ ଶବରକୁ ନେବା ପାଇଁ ଶିବଙ୍କ ଅନୁଚରମାନେ ଆସିଲେ ଏବଂ ଯମଦୂତମାନେ ମଧ୍ୟ ଆସି ସେଠାରେ ଉପସ୍ଥିତ ହେଲେ । ଶିବ-ଦୂତମାନେ କହିଲେ, “ମହାଦେବଙ୍କ ଆଦେଶରେ ଏହି ପୁଣ୍ୟବାନ୍ ଶବରକୁ ନେବା ପାଇଁ ଆମ୍ଭେମାନେ ଆସିଛୁ । ଏହି ବ୍ୟକ୍ତି ଜାଗର-ବ୍ରତ ପାଳନ କରି, ଉପବାସ ଓ ଅନିଦ୍ରା ରହି, ରାତିସାରା ଆଲୋକ ଜାଳି, ଶିବଙ୍କ ମସ୍ତକରେ ଜାଗର ରାତିଟିସାରା ବେଲପତ୍ର ଓ ଜଳ ଲାଗି କରି ଶିବଙ୍କୁ ବହୁ ସନ୍ତୁଷ୍ଟ କରିଅଛି ! ତେଣୁ ସେ ଶିବଲୋକରେ ବାସ କରିବ । ତୁମ୍ଭେମାନେ ଏହାକୁ ଛୁଇଁ ପାରିବ ନାହିଁ ।”

ଶିବ-ଦୂତମାନଙ୍କଠାରୁ ଏ କଥା ଶୁଣି ଯମ-ଦୂତମାନେ ରାଗିଗଲେ ଏବଂ କହିଲେ, “ଏହି ଶବର ମହାପାପୀ । ସେ ଜୀବନସାରା ଅସଂଖ୍ୟ ଜୀବ ବଧକରି ମହାପାପ



ଅର୍ଜନ କରିଅଛି। ତେଣୁ ଯମରାଜାଙ୍କ ଦରବାରରେ ଏହାର ଉଚିତ ଦଣ୍ଡବିଧାନ କରାଯାଇଛି ଏବଂ ଯମରାଜାଙ୍କ ଆଦେଶରେ ଆମ୍ଭେମାନେ ଏହାକୁ ବାନ୍ଧି ଯମପୁରକୁ ନେଇଯିବୁ।''

ଶିବଦୂତ ଓ ଯମଦୂତଙ୍କ ମଧ୍ୟରେ ଯୁକ୍ତିତର୍କ ବଢ଼ିବାକୁ ଲାଗିଲା। ଝଗଡା କୌଣସି ପ୍ରକାର ନିଷ୍ପତ୍ତି ହୋଇ ପାରିଲା ନାହିଁ। ଏହା ଜାଣି ସ୍ୱୟଂ ଧର୍ମରାଜ-ଯମ ସେଠାରେ ଆସି ଉପସ୍ଥିତ ହେଲେ। ସମସ୍ତ କଥା ବୁଝିସାରି ଦୂତମାନଙ୍କୁ ଆଦେଶ ଦେଇ କହିଲେ, ''ଶିବଙ୍କ ଆଦେଶ ଅନ୍ୟଥା ହୋଇ ପାରିବ ନାହିଁ। ସେ ମୃତ୍ୟୁଞ୍ଜୟୀ ଦେବତା। ଇଚ୍ଛାକଲେ ଏହି ଶବରକୁ ଜୀବଦାନ ମଧ୍ୟ ଦେଇ ବଞ୍ଚାଇ ଦେଇ ପାରିବେ। ବର୍ତ୍ତମାନ ଏହାକୁ ନେବା ଅଧିକାର ମୁଁ ତ୍ୟାଗ କଲି।'' ■■

# ଭକ୍ତର ଭଗବାନ

ସହରଟିରେ ରଙ୍ଗନାଥ ଠାକୁରଙ୍କର ନାମ ଖୁବ୍ ଡାକ। ଲୋକମାନେ ବିଷ୍ଣୁଙ୍କର ପୂଜା ଦେଖିବାକୁ ସକାଳ ସଞ୍ଜ ଦୁଇବେଳା ମନ୍ଦିରକୁ ଆସନ୍ତି।

ମନ୍ଦିରର ଅଳ୍ପ ଦୂରରେ ଜଣେ ଗରିବ ବ୍ରାହ୍ମଣ ବାସ କରୁଥିଲା। ବ୍ରାହ୍ମଣର ସାତ ବରଷର ପୁଅଟି ନିତି ମନ୍ଦିରକୁ ଆସେ। ଠାକୁରଙ୍କ ପୂଜା ପାଠ ମନଦେଇ ଶୁଣେ। ଠାକୁରଙ୍କର ଲୀଳା ଓ ମହିମା କଥା ଶୁଣୁ ଶୁଣୁ ସେ ଧ୍ୟାନମଗ୍ନ ହୋଇଯାଏ। ବେଳେ ବେଳେ ଆଖି ଖୋଲି ଠାକୁରଙ୍କ ମୁହଁକୁ ବହୁତ ସମୟ ଯାଏ ଏକ ଧ୍ୟାନରେ ଚାହିଁ ରହେ।

ଦିନେ ପିଲାଟି ଘରେ କିଛି ନ କହି ସନ୍ଧ୍ୟାବେଳେ ମନ୍ଦିରକୁ ଆସି ଠାକୁରଙ୍କ ଆଡେ ଏକଦୃଷ୍ଟିରେ ଚାହିଁ ମନେ ମନେ ଜଣାଣ କରୁଥାଏ। ଭକ୍ତମାନେ ମନ୍ଦିରକୁ ଆସି ସନ୍ଧ୍ୟା ଆଳତୀ ଦର୍ଶନକରି ଫେରିଲେ। ରାତିରେ ପୂଜାରୀ ଭୋଗରାଗ ଦେଇ ଦିଅଁକୁ ଶୁଆଇ ମନ୍ଦିରରେ ତାଲା ପକାଇ ନିଜ ଘରକୁ ଫେରିଗଲେ।

ପିଲାଟି ଧ୍ୟାନରେ ମଗ୍ନ। ସେ ଏସବୁ କିଛି ଜାଣିପାରିଲା ନାହିଁ। ବହୁତ ରାତିରେ ଯେତେବେଳେ ତା'ର ଧ୍ୟାନ ଭାଙ୍ଗିଲା, ସେତେବେଳେ ଘରକୁ ଯିବାକଥା ମନେ ପଡିଗଲା। ଦେଖିଲା ଚାରିଆଡ ଶୂନ୍‌ଶାନ୍। ଫାଟକରେ ତାଲା ପଡିଛି। ସେ ଏବେ ଯିବ କିମିତି? ଶେଷରେ ସେ ଠାକୁରଙ୍କ ପହଡ କବାଟ ନିକଟକୁ ଆସି ଫାଙ୍କରେ ଭିତରକୁ ଚାହିଁଲା।



ଦେଖିଲା, ଦୀପ ଆଲୁଅରେ ଠାକୁର ରଙ୍ଗନାଥ ଦେଖା ଯାଉଛନ୍ତି ।

କିନ୍ତୁ ଏ କ'ଣ ସେ ଦେଖୁଛି ? ଠିକ୍ ତା'ରି ପରି ଦେଖିବାକୁ ପିଲାଟିଏ ଠିଆ ହୋଇଛି ଠାକୁରଙ୍କ ସାମନାରେ । ସେ ଅତି ଖୁସୀହୋଇ ଠାକୁରଙ୍କୁ ଡାକି କହିଲା, "ହେ ଭାଇ ! ଆସ ଜହ୍ନ ଆଲୁଅରେ ଖେଳିବା ।"

ଆଶ୍ଚର୍ଯ୍ୟର କଥା, ଡାକ ଶୁଣିବା ମାତ୍ରେ ପିଲାଟି କବାଟର ଫାଙ୍କବାଟେ ବାହାରକୁ ବାହାରି ଆସି ବ୍ରାହ୍ମଣ ପିଲାଟିର ହାତଧରି ପକାଇବା ସଙ୍ଗେ ସଙ୍ଗେ ମନ୍ଦିରର ତାଲାସବୁ ଖୋଲିଗଲା । ଦୁହେଁ ହାତ ଧରାଧରି ହୋଇ ମନ୍ଦିର ସାମନାରେ ଥିବା ପଡିଆ ମଧ୍ୟରେ ଶୀତଳ ଚନ୍ଦ୍ର ଆଲୋକରେ ଖେଳିବାକୁ ଲାଗିଲେ ।

ଏହି ସମୟରେ ବ୍ରାହ୍ମଣପିଲା ଦେଖି ପାରିଲା, ସେ ପିଲାଟିର ହାତରେ ଗୋଟିଏ ବଇଁଶୀ। ସେ ବୁଝି ପାରିଲା, ନିଜେ ଶ୍ରୀକୃଷ୍ଣ ବାଳକ ବେଶରେ ଦେଖାଦେଇ ତା' ସାଙ୍ଗରେ ଖେଳୁଛନ୍ତି। ବ୍ରାହ୍ମଣ ପିଲାଟି କହିଲା, "ହେ ଭାଇ! ବଂଶୀଟା ଟିକେ ବଜାନ୍ତ କି ?"

ବାଳକ ବେଶଧାରୀ ଶ୍ରୀକୃଷ୍ଣ ତା'ର ମନକଥା ଜାଣି ବଇଁଶୀ ବଜାଇଲେ। କି ସୁନ୍ଦର ସ୍ୱର ! ବ୍ରାହ୍ମଣ ପିଲାଟିର ଖୁସି କହିଲେ ନସରେ !

ଶ୍ରୀକୃଷ୍ଣ ମନ୍ଦିରକୁ ଗଲେ। ବାଳକଟି ତାଙ୍କ ସାଙ୍ଗରେ ଯାଉଥାଏ। ରାତି ତୃତୀୟ ପ୍ରହର ହେଲା। ବାଳକଟି ମନ୍ଦିର ଭିତରକୁ ଯାଉଥିବା ଦେଖି ବ୍ରାହ୍ମଣ ପିଲାଟି ପଛେ ପଛେ ଯିବାକୁ ଲାଗିଲା। କିନ୍ତୁ ପହଡ କବାଟ ପାଖରେ ପହଞ୍ଚିଲା ବେଳକୁ ସେ ଆଉ ବାଳକ-ରୂପୀ ଶ୍ରୀକୃଷ୍ଣଙ୍କୁ ଦେଖି ନପାରି ଆଶ୍ଚର୍ଯ୍ୟ ହୋଇ ଚାରିଆଡେ ବହୁତ ଖୋଜି ସୁଦ୍ଧା ପାଇଲା ନାହିଁ। ଭାଇ, ଭାଇ ବୋଲି ବହୁତ ଥର ଡାକିଲା, ମାତ୍ର ଜବାବ ନ ପାଇ ନିରାଶ ହୋଇ ବସି ପଡିଲା ପହଡ କବାଟ ପାଖରେ।

ସକାଳ ହେଲା। ପୂଜାରୀ ଆସି ଦେଖିଲା, ବ୍ରାହ୍ମଣ ପିଲାଟି ପହଡ କବାଟ ପାଖରେ ବସି କାନ୍ଦୁଛି। ଏଣେ ପିଲାକୁ ଖୋଜି ଖୋଜି ବ୍ରାହ୍ମଣ ହଇରାଣ ହୋଇ ମନ୍ଦିରକୁ ଆସିଲାରୁ ପୂଜାରୀ ତାକୁ ସାଙ୍ଗରେ ଆଣି ତା'ର ପୁଅକୁ ଦେଖାଇ ଦେଲା। ବ୍ରାହ୍ମଣ ରାଗରେ ପିଲାଟିକୁ ଏମିତି ମାଡ ମାଇଲା ଯେ ତା' ଦେହହାତ ଫାଟି ଧାର ଧାର ହୋଇ ରକ୍ତ ବୋହିବାକୁ ଲାଗିଲା।

ପୂଜାରୀ ଠାକୁରଙ୍କୁ ସ୍ନାନ କରାଉଥିଲା। ହଠାତ୍ ସେ ଦେଖିଲା, ରଙ୍ଗନାଥଙ୍କର ଶରୀରରୁ ରକ୍ତଧାର ଝରି ପଡୁଛି। ପୂଜାରୀ ଦୌଡିଯାଇ ମନ୍ଦିର ମାଲିକଙ୍କୁ ସବୁକଥା କହିଲା। ସେ ମନ୍ଦିରକୁ ଆସି ଦେଖିଲେ ସବୁକଥା ସତ୍ୟ। ଭକ୍ତି ଓ ଭୟରେ ତାଙ୍କର ବାକ୍ୟ ସ୍ଫୁରିଲା ନାହିଁ। ମନ୍ଦିରକୁ ଦର୍ଶନ ପାଇଁ ବହୁତ ଲୋକ ଆସିଥିଲେ। ସେମାନେ ବୁଝିପାରିଲେ ଯେ ଭକ୍ତ ବାଳକ କହୁଛି, ରାତିସାରା ସେ ଠାକୁରଙ୍କ ସାଙ୍ଗରେ ଖେଳିଛି, ବୁଲିଛି। ଏହି ପୁଣ୍ୟପ୍ରାଣ ଭକ୍ତ-ବାଳକକୁ ମାଡମାରି ରକ୍ତ ବୁହାଇ ଦେବାରୁ ଭଗବାନ

ଶ୍ରୀରଙ୍ଗନାଥଙ୍କ ଦେହରେ ମାଡ ଚିହ୍ନ ଓ ରକ୍ତଧାର ଦେଖାଗଲା । ସମସ୍ତେ ଭକ୍ତିରେ ବ୍ରାହ୍ମଣ ପିଲାକୁ ଆଦର କରି ତା'ବେକରେ ଫୁଲମାଳ ପିନ୍ଧାଇଲେ, ସେ ଭଗବାନଙ୍କର ବଡ ଭକ୍ତ ବୋଲି ଜାଣିଲେ ।

ଶ୍ରୀରଙ୍ଗନାଥ ବଡ ପ୍ରତ୍ୟକ୍ଷ ଦେବତା । ଭଗବାନଙ୍କୁ ଯେ ଯେପରି ଭାବରେ ଡାକେ, ସେହି ପ୍ରକାରରେ ସେ ତାଙ୍କୁ ପାଇଥାଏ ।



# ଶାପମୋଚନ

ଗୋଟିଏ ରାଜ୍ୟରେ ଜଣେ ବ୍ରାହ୍ମଣ ଥିଲେ। ତାଙ୍କର ଦୁଇଟି ପୁଅ। ପିଲାଙ୍କର ବିଦ୍ୟା ଶିକ୍ଷା ବୟସ ହେବାରୁ ତାଙ୍କ ପିତା ଉପଯୁକ୍ତ ଗୁରୁଙ୍କ ପାଖରେ ତାଙ୍କୁ ବିଦ୍ୟାଶିକ୍ଷା ଦେଲେ। କାଳକ୍ରମେ ଦୁଇଜଣ ଭାଇ ଅସାଧାରଣ ଭାବେ ପାଠଗୁଡିକ ଅଧ୍ୟୟନ କରି ବଡ ପଣ୍ଡିତ ହୋଇ ଉଠିଲେ।

ସେହି ରାଜ୍ୟରେ ଜଣେ ଧାର୍ମିକ ରାଜା ଥିଲେ। ଥରେ ଗୋଟିଏ ଯଜ୍ଞ କରିବାକୁ ସେ ସ୍ଥିରକଲେ। ତାଙ୍କର ପାତ୍ରମନ୍ତ୍ରୀମାନେ ଯଜ୍ଞ ଆୟୋଜନରେ ଲାଗି ପଡିଲେ। କେତେ ସାଧୁ, ସନ୍ନ୍ୟାସୀ, ବ୍ରାହ୍ମଣ ଓ ପଣ୍ଡିତମାନେ ଯଜ୍ଞକୁ ନିମନ୍ତ୍ରିତ ହୋଇ ଆସିଲେ। ଯଜ୍ଞ କାର୍ଯ୍ୟ ଆରମ୍ଭ ହୋଇ ଯଥା ସମୟରେ ଶେଷ ହେଲା। ସାଧୁ, ସନ୍ନ୍ୟାସୀ, ବ୍ରାହ୍ମଣ ଓ ପଣ୍ଡିତମାନଙ୍କୁ ରାଜା ବହୁତ ଧନରତ୍ନ ଓ ଦାନଦକ୍ଷିଣା ଦେଲେ। ସମସ୍ତେ ଖୁସୀ ହୋଇ ଯେ ଯୁଆଡେ ଫେରିଗଲେ।

ପଣ୍ଡିତ ଦୁଇଭାଇ ରାଜାଙ୍କ ଠାରୁ ବହୁତ ଗୁଡିଏ ଧନରତ୍ନ ପାଇଥାଆନ୍ତି। ଥରେ ଦୁଇଭାଇ ଏକାଠି ବସି ବିଚାର କଲେ, ଆମେ ତ ସାଧୁଲୋକ। ଆମର ଏତେଗୁଡେ ଧନରତ୍ନ କ'ଣ ହେବ? ଆମେ ଯାକୁ ସବୁ କାହାକୁ ଦେଇଦେବା। ସାନଭାଇ କଥାରେ ବଡଭାଇ ଖୁବ୍ ଖୁସୀ ହୋଇ କହିଲେ, "ଏ ସମସ୍ତ ଧନରତ୍ନ ଆମେ ଆମ ପିତାଙ୍କୁ ଦେଇଦେବା।" କିନ୍ତୁ ସାନଭାଇ ବଡଭାଇଙ୍କ ପ୍ରସ୍ତାବରେ ରାଜି ହେଲେ ନାହିଁ। ସେ



କହିଲେ, ‘‘ପିତାଙ୍କୁ ଦେବା ନାହିଁ। ଆମ ଶିକ୍ଷାଗୁରୁଙ୍କୁ ଦେବା।’’

ସାନଭାଇର କଥା ଶୁଣି ବଡଭାଇ କହିଲେ, ‘‘ପିତା କେତେ କଷ୍ଟ ସହି ଆମକୁ ଲାଳନ ପାଳନ କରି ଆମ ଜୀବନ ବଞ୍ଚାଇଛନ୍ତି। ଆମକୁ କେତେ ବୁଦ୍ଧି, ଜ୍ଞାନ ଶିଖାଇଛନ୍ତି। ପିତାଙ୍କ ଠାରୁ ବଳି ଆଉ କେହି ବଡ ନୁହନ୍ତି। ତେଣୁ ଏହି ଧନରତ୍ନ ସବୁ ପିତାଙ୍କୁ ଦିଆଯିବ।’’ ବଡଭାଇଙ୍କ କଥା ଶୁଣି ସାନଭାଇ ପସନ୍ଦ କଲେନାହିଁ। ସେ କହିଲେ, ‘‘ମଣିଷ ଜୀବନରେ ଶିକ୍ଷାଗୁରୁଙ୍କ ଠାରୁ ବଳି ଆଉ କେହି ବଡ ନୁହନ୍ତି। ସେ ଶିଷ୍ୟର ମଙ୍ଗଳ କାମନା କରି କେତେ କଷ୍ଟ ସହ୍ୟ କରନ୍ତି। କେତେ କୌଶଳ କରି ବିଦ୍ୟା ଗୁଡିକ ଶିଷ୍ୟର ମୁଖସ୍ଥ, କଣ୍ଠସ୍ଥ ଓ ଗର୍ଭସ୍ଥ କରାନ୍ତି। ତାଙ୍କଠାରୁ ଉପକାରୀ ବା ବଡ

ଆଉ କେହି ନୁହନ୍ତି। ତେଣୁ ଏହି ଧନରତ୍ନଗୁଡ଼ିକ ଶିକ୍ଷାଗୁରୁଙ୍କୁ ଦିଆଯିବ।''

ଦୁଇଭାଇଙ୍କର ଦୁଇଟି କଥା। କାହାରି କଥା କାହାର ସାଙ୍ଗରେ ଖାପ ଖାଇଲା ନାହିଁ। ଦୁଇଜଣଙ୍କ ମଧ୍ୟରେ ମତାନ୍ତର ହୋଇ ମହାଦ୍ୱନ୍ଦ୍ୱ ଆରମ୍ଭ ହେଲା। ଯୁକ୍ତିତର୍କ ବଢ଼ିବାକୁ ଲାଗିଲା। ଶେଷରେ ସେ ଦୁଇଜଣ ମାଡ ମରାମରି ହୋଇ ବଡପଣ୍ଡିତରୁ ମହାମୂର୍ଖ ହୋଇଗଲେ। ବଡଭାଇ କ୍ରୋଧରେ ପ୍ରଜ୍ୱଳିତ ହୋଇ ସାନଭାଇକୁ ଅଭିଶାପ ଦେଲେ, ''ତୁ ଗୋଟିଏ କୁମ୍ଭୀର ହୋଇ ଗଣ୍ଡକି ନଦୀରେ ରହ।'' ବଡଭାଇ ଅଭିଶାପ ଦେବା ଦେଖି ସାନଭାଇ ମଧ୍ୟ କ୍ରୋଧରେ ଜର୍ଜରିତ ହୋଇ ବଡ ଭାଇକୁ ଶାପ ଦେଲେ, ''ତୁ ଆଜିଠାରୁ ଗଜମୂର୍ଖ ହୋଇ ଜଙ୍ଗଲରେ ବାସ କର।''

ବ୍ରହ୍ମଶାପ କଦାପି ଖଣ୍ଡନ ହୁଏ ନାହିଁ। ଦୁଇଜଣ ଅଭିଶାପ ଦେଲାପରେ ଯେତେବେଳେ ତାଙ୍କର ରାଗ ଶାନ୍ତହେଲା ପ୍ରତ୍ୟେକେ ବୁଝିପାରିଲେ ଅଳ୍ପ କଥାକୁ ବଡ କରି ସେ କିପରି ଅନ୍ୟାୟ କରିଛନ୍ତି ଓ ନିଜର ଅମଙ୍ଗଳକୁ ଡାକି ଆଣିଛନ୍ତି। ଜଣେ କୁମ୍ଭୀର ହୋଇ ଜଳରେ ରହିବ, ଆଉଜଣେ ହସ୍ତୀ ହୋଇ ଜଙ୍ଗଲରେ ବିଚରଣ କରିବ। କ୍ରୋଧରେ ଅଧୀର ହୋଇ ସେମାନେ ଦୁର୍ଲ୍ଲଭ ମାନବଜନ୍ମକୁ ନଷ୍ଟ କରିଦେଲେ। ଏହି ବିପତ୍ତିରୁ ରକ୍ଷା ପାଇବାକୁ କୌଣସି ଉପାୟ ନଦେଖି ଦୁଇଭାଇ କାତର ପ୍ରାର୍ଥନାରେ ଭଗବାନଙ୍କୁ ସ୍ମରଣ କଲେ।

ଭଗବାନ ଭକ୍ତର ଅଧୀନ। ଭକ୍ତର ଡାକକୁ ସେ କାନଡେରି ରହିଥାଆନ୍ତି। ଯେତେବେଳେ ସେ ଶୁଣିପାରିଲେ ଯେ ଦୁଇଜଣ ଭକ୍ତ ତାଙ୍କୁ ବିକଳରେ ଡାକୁଛନ୍ତି, ସେ ଗରୁଡ ଉପରେ ବସି ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରି ଆକାଶ ମାର୍ଗରୁ ଉଡି ଆସିଲେ। ଦୁଇ ଭକ୍ତଙ୍କ ଆଗରେ ପହଞ୍ଚି ଗଲେ। ସେମାନଙ୍କ ଦୁଃଖର କାରଣ ବୁଝିସାରି ତାଙ୍କୁ କହିଲେ, ''ହେ ଭକ୍ତଦ୍ୱୟ। ତୁମେ ଅଳ୍ପ କଥାରେ କ୍ରୋଧର ବଶବର୍ତ୍ତୀ ହୋଇ ନିଜ ଭିତରେ ବ୍ରହ୍ମଶାପର ପ୍ରଭାବ ବରଣ କରିଛି। ତୁମେ ତାହା ନିଶ୍ଚୟ ଭୋଗ କରିବ। ହସ୍ତୀ ଓ କୁମ୍ଭୀର ହୋଇ ଗୋଟିଏ ଯୁଗ ବିତାଇବା ପରେ ମୁଁ ଯେତେବେଳେ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ଅବତାର ହେବି, ସେତେବେଳେ ତୁମେ ମୋତେ ସ୍ମରଣ କଲେ ମୁଁ ତୁମକୁ ଏହି ବ୍ରହ୍ମଶାପରୁ



ପରିତ୍ରାଣ କରିବି।'' ଏହା କହି ଭଗବାନ ଅନ୍ତର୍ହିତ ହେଲେ।

ଗୋଟିଏ ଯୁଗ ବିତିବାକୁ ଲାଗିଲା। ଦୁଇଟି ଭାଇ କୁମ୍ଭୀର ଓ ହସ୍ତୀ ହୋଇ ବହୁ କଷ୍ଟ ଭୋଗ କଲେ। ଥରେ ଗ୍ରୀଷ୍ମ କାଳରେ ହାତୀକୁ ଖୁବ୍ ଶୋଷ ହେଲା। ସେ ପାଣି ପିଇବାକୁ ଯାଇ ନଈ ଭିତରେ ପଶିଯିବା ମାତ୍ରେ କୁମ୍ଭୀର କୁଆଡେ ଥିଲା ଧାଇଁଆସି ହସ୍ତୀକୁ ଆକ୍ରମଣ କରି ରାମ୍ପୁଡି କାମୁଡି କ୍ଷତବିକ୍ଷତ କରି ପକାଇଲା। ହସ୍ତୀ ଯନ୍ତ୍ରଣାରେ ଛଟପଟ ହୋଇ ନିଜର ଶୁଣ୍ଢଟିକୁ ଉପରକୁ ଟେକି ଭଗବାନଙ୍କୁ ସ୍ତୁତି କଲା। ଭଗବାନ ହସ୍ତୀର ଡାକ ଶୁଣି ଗରୁଡ ଉପରେ ବସି ମର୍ତ୍ତ୍ୟକୁ ଉଡିଆସିଲେ। ସୁଦର୍ଶନ ଚକ୍ରରେ କୁମ୍ଭୀରକୁ ଦୁଇଖଣ୍ଡ କରି କାଟିଦେଲେ। ଯନ୍ତ୍ରଣାଗ୍ରସ୍ତ ହସ୍ତୀ କୁମ୍ଭୀର ମୁଖରୁ ଉଦ୍ଧାର ପାଇ ନଦୀ ଜଳରୁ ଉପରକୁ ଧୀରେ ଉଠି ଆସିଲା ଓ ତଳେ ପଡିଯାଇ ପ୍ରାଣ ହରାଇଲା। ସେହିଦିନ ଉଭୟ କୁମ୍ଭୀର ଓ ହସ୍ତୀଙ୍କର ଶାପ ମୋଚନ ହେଲା।

# ଶ୍ରେଷ୍ଠ ଦେବତା କିଏ ?

ପୁରାଣଯୁଗର କଥା। ଥରେ ଋଷିମାନଙ୍କ ମଧ୍ୟରେ ଏକ ସଭା ହେବାକୁ ସ୍ଥିର ହେଲା। ସଭାର ଉଦ୍ଦେଶ୍ୟ ହେଲା, କେଉଁ ଦେବତା ସର୍ବଶ୍ରେଷ୍ଠ ତାହା ସିଦ୍ଧାନ୍ତ ହେବ। ସବୁ ଋଷିମାନଙ୍କୁ ନିମନ୍ତ୍ରଣ ଦିଆଗଲା।

ଭୃଗୁଋଷି ହେଉଛନ୍ତି ବ୍ରହ୍ମାଙ୍କର ପୁତ୍ର। ଯଥା ସମୟରେ ସବୁ ଋଷିମାନେ ଆସି ତାଙ୍କରି ଆଶ୍ରମରେ ପହଞ୍ଚିଲେ। ସଭା ଚାଲିଲା। ଋଷିମାନେ ଜଣକ ପରେ ଜଣେ ନିଜ ନିଜର ଜ୍ଞାନ ବିଷୟରେ ଆଲୋଚନା କଲେ। କିନ୍ତୁ କେଉଁ ଦେବତାଙ୍କ ଉଦ୍ଦେଶ୍ୟରେ କିଏ ତପସ୍ୟା କରନ୍ତି, ତାହା କେହି କହିଲେ ନାହିଁ।

ଏତିକିବେଳେ ସଭାରେ ଏକ ପ୍ରଶ୍ନ ଉଠିଲା। ତାହା ହେଲା ବ୍ରହ୍ମା, ବିଷ୍ଣୁ, ଶିବଙ୍କ ମଧ୍ୟରେ ଶ୍ରେଷ୍ଠ ଦେବତା କିଏ ? ଏ ପ୍ରଶ୍ନ ଶୁଣି ଋଷିମାନେ ବିଚଳିତ ହୋଇଗଲେ। କେହି କେହି ନୀରବ ରହିଲେ। ଶେଷରେ ସବୁ ମୁନିମାନେ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କ ମଧ୍ୟରେ କିଏ ସର୍ବଶ୍ରେଷ୍ଠ ଏହା ନିର୍ଣ୍ଣୟ କରିବା ପାଇଁ ମହର୍ଷି ଭୃଗୁଙ୍କୁ ବ୍ରହ୍ମାଙ୍କ ପାଖକୁ ପଠାଇଲେ।

ଭୃଗୁ ଯାଇ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ ଏବଂ ତାଙ୍କୁ ପ୍ରଣାମ ନ କରି ଓ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ନକରି ତାଙ୍କ ପାଖରେ ବସିପଡିଲେ। ବ୍ରହ୍ମା ନିଜ ପୁତ୍ରର ଏପରି ବ୍ୟବହାର ଦେଖି ଖୁବ୍ ରାଗିଗଲେ। କିନ୍ତୁ ଭୃଗୁ ତାଙ୍କର ପୁତ୍ର ହୋଇଥିବାରୁ



ତାଙ୍କୁ କୌଣସି ଅଭିଶାପ ନଦେଇ କେବଳ କ୍ରୋଧକୁ ଚାପି ନୀରବ ରହିଲେ। ଭୃଗୁ ପିତାଙ୍କର ଏପରି ପ୍ରଚଣ୍ଡ ମୁଖ ଦେଖି ତାଙ୍କୁ କିଛି ନକହି ସେଠାରୁ ଚାଲିଗଲେ।

ଭୃଗୁ ବ୍ରହ୍ମଲୋକରୁ ଯାଇ କୈଳାସରେ ଶିବଙ୍କ ପାଖରେ ପହଞ୍ଚିଲେ। ଶିବ ଯେତେବେଳେ ଭୃଗୁଙ୍କୁ ଦେଖିଲେ ଅତି ଖୁସୀହୋଇ ତାଙ୍କୁ ଆଲିଙ୍ଗନ କରିବାକୁ ଦୁଇହାତ ବଢାଇ ଆଗେଇ ଆସିଲେ। ଶିବ ଚିତାଭସ୍ମ ବୋଲି ହୋଇଥିବାରୁ ଭୃଗୁ ଶିବଙ୍କୁ ଦୂରେଇ ରହିବାକୁ କହିଲେ।

ଶିବ ଭୃଗୁଙ୍କଠାରୁ ଏପରି ଅପମାନଜନକ କଥା ଶୁଣି ତାଙ୍କର କ୍ରୋଧ ଜଳିଉଠିଲା। ସେ ତ୍ରିଶୂଳ ଧରି ଭୃଗୁଙ୍କୁ ମାରିବା ପାଇଁ ଗୋଡାଇଲେ। ପାର୍ବତୀ ଶିବଙ୍କର ଏପରି ପ୍ରଚଣ୍ଡ ରାଗ ଦେଖି ଭାବିଲେ, ଶିବ ବର୍ତ୍ତମାନ ବ୍ରହ୍ମହତ୍ୟା ପାପ କରିବାକୁ ଯାଉଛନ୍ତି। ସେ ଯଦି ବ୍ରହ୍ମାଙ୍କ ପୁତ୍ରକୁ ବଧ କରିବେ, ତାହାହେଲେ ବ୍ରହ୍ମା ଆସି ଶିବଙ୍କ ସାଙ୍ଗରେ ଯୁଦ୍ଧ କରି ପୃଥିବୀ ପ୍ରଳୟ କରିଦେବେ।

ପାର୍ବତୀ ଏହିପରି ଭାବି ଶିବଙ୍କ ସମ୍ମୁଖରେ ଯାଇ ହାତଯୋଡି କହିଲେ, "ହେ ପ୍ରଭୋ ! ଆପଣ ବର୍ତ୍ତମାନ ବ୍ରହ୍ମହତ୍ୟା ପରି ମହାପାପ କରିବାକୁ ଯାଉଛନ୍ତି। ମୋର

ଅନୁରୋଧ, ଆପଣ କ୍ରୋଧାଗ୍ନି ନିର୍ବାପିତ କରନ୍ତୁ।'' ପାର୍ବତୀଙ୍କର ବିନୟ ଦେଖି ଶିବଙ୍କର ରାଗ ଶାନ୍ତହେଲା।

ଭୃଗୁ ବ୍ରହ୍ମା ଓ ଶିବଙ୍କ ପାଖରେ ଅପମାନିତ ହୋଇ ରାଗଜର୍ଜରିତ ଅବସ୍ଥାରେ ବିଷ୍ଣୁଙ୍କ ପାଖକୁ ଗଲେ। ସେ ଯାଇ ଦେଖିଲେ, ବିଷ୍ଣୁ କ୍ଷୀରସିନ୍ଧୁରେ ଶୟନ କରିଛନ୍ତି। ମହାଲକ୍ଷ୍ମୀ ତାଙ୍କର ପାଦସେବା କରୁଛନ୍ତି। ଭୃଗୁ ଏପରି ଦେଖି ଅନ୍ୟ କୌଣସି ପ୍ରକାର ବିଷ୍ଣୁଙ୍କୁ ନଉଠାଇ ବିଷ୍ଣୁଙ୍କ ବକ୍ଷସ୍ଥଳକୁ ଖୁବ୍ ଜୋରରେ ପାଦରେ ପ୍ରହାର କଲେ।

ବିଷ୍ଣୁ ତତ୍‌କ୍ଷଣାତ୍ ନିଦରୁ ଉଠିପଡିଲେ। ଭୃଗୁଙ୍କୁ ଦେଖି ପାଦକୁ ଧରି ଆଉଁସି ପକାଇ କହିଲେ, ''ହେ ମହାମୁନି ! ଆପଣଙ୍କ ପାଦରେ କେତେ ଆଘାତ ଲାଗିଲା ! କଷ୍ଟ ହେଉନାହିଁ ତ ?'' ଏହିପରି କହି ଋଷିଙ୍କୁ ନେଇ ଆସନରେ ବସାଇ ପୁନର୍ବାର କହିଲେ, ''ହେ ମହାମୁନି ! ଆପଣ କ'ଣ ପାଇଁ ମୋ ପାଖକୁ ଆଗମନ କଲେ କହନ୍ତୁ ?''

ଭୃଗୁ ବିଷ୍ଣୁଙ୍କୁ କୌଣସି ଉତ୍ତର ନ ଦେଇ ନମସ୍କାର କରି ସେଠାରୁ ଫେରିଆସିଲେ। ସେ ଅଳ୍ପ ସମୟ ମଧ୍ୟରେ ବ୍ରହ୍ମଲୋକରୁ ମର୍ତ୍ତ୍ୟଲୋକକୁ ଚାଲିଆସିଲେ। ସେ ଆସି ଋଷିମାନଙ୍କ ସଭାରେ ପହଞ୍ଚିଲେ। ସମସ୍ତେ ତ ତାଙ୍କୁ ଚାହିଁ ବସିଛନ୍ତି। ବ୍ରହ୍ମା, ବିଷ୍ଣୁ, ଶିବଙ୍କ ପାଖରେ କ'ଣ ଘଟଣା ଘଟିଲା, ସେ ସବୁକଥା ସଭାରେ କହିଲେ।

ଭୃଗୁଙ୍କଠାରୁ ଋଷିମାନେ ସବୁ ଶୁଣି ତାଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ସେମାନେ ଭୃଗୁଙ୍କୁ କହିଲେ, ''ହେ ମୁନିଶ୍ରେଷ୍ଠ ! ସହସ୍ର ସହସ୍ର ମୁନି ତପସ୍ୟାକରି ଯେଉଁ ପରଂବ୍ରହ୍ମଙ୍କ ଦର୍ଶନ ପାଉ ନାହାନ୍ତି, ଆପଣ ତାଙ୍କୁ ପ୍ରତ୍ୟକ୍ଷରେ ଦର୍ଶନ କଲେ। ପୁଣି ତାଙ୍କୁ ପଦାଘାତ କରିପାରିଲେ ? ଜଗତକର୍ତ୍ତା ଆପଣଙ୍କ ପାଦକୁ କଷ୍ଟ ହୋଇଥିବ କହି ଆଉଁସି ଅନୁତାପ କଲେ ! ଧନ୍ୟ ତୁମେ !'' ସବୁ ଋଷିଙ୍କ ସମ୍ମତି କ୍ରମେ ବିଷ୍ଣୁଙ୍କୁ ସର୍ବଶ୍ରେଷ୍ଠ ଦେବତା ବୋଲି ଘୋଷଣା କରାଗଲା।





**ଶ୍ରୀମତୀ କ୍ଷେତ୍ରମଣି ପତି**

ଜନ୍ମ- ୧୯୧୫

ଦୀର୍ଘବର୍ଷ ହେବ ଶିଶୁ-ସାହିତ୍ୟ ରଚନାରେ ମନୋନିବେଶ କରିଛନ୍ତି। ବହୁଗଳ୍ପ ଶିଶୁ-ପତ୍ରପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶ ପାଇଛି। ଏ ଯାବତ୍ ଅପ୍ରକାଶିତ ତିନି ଚାରୋଟି ପାଣ୍ଡୁଲିପି ରହିଛି ତାଙ୍କର।

ବାଲ୍ୟାବସ୍ଥାରୁ ପୁସ୍ତକପାଠ, ହସ୍ତଶିଳ୍ପ, କବିତକଳା ପ୍ରତି ତାଙ୍କର ଗଭୀର ଅନୁରକ୍ତି। ତାଙ୍କର ସ୍ୱାମୀ ସ୍ୱର୍ଗୀୟ ନାରାୟଣ ପତି ଓଡିଶାର ସ୍ୱନାମଧନ୍ୟ ଗଣିତଜ୍ଞ ଏବଂ କଟକସ୍ଥ ରେଭେନ୍ସା କଲିଜିଏଟ୍‌ର ପୂର୍ବତନ ପ୍ରଧାନଶିକ୍ଷକ ଥିଲେ।